# ମହତାବ ଜୟନ୍ତୀ ସ୍ମାରକୀ

## ୨୦୦୨

**ସଂପାଦନା :**

ପ୍ରଫେସର ପଠାଣି ପଟ୍ଟନାୟକ

ଅଧ୍ୟାପିକା ବୀଣାପାଣି ମହାନ୍ତି

ଡକ୍ଟର ରତ୍ନାକର ଚଇନି

ଡକ୍ଟର ପ୍ରତିଭା ରାୟ

ପ୍ରଫୁଲ୍ଲ କୁମାର ସାହୁ

ନିରାକାର ସାହୁ

ସରୋଜରଂଜନ ମହାନ୍ତି

ନୃସିଂହ ଚରଣ ସାହୁ

ରମାକାନ୍ତ ମିଶ୍ର

ଡକ୍ଟର ଗୋବିନ୍ଦ ଚନ୍ଦ୍ର ଚାନ୍ଦ

**ପ୍ରକାଶକ :**

**ଡକ୍ଟର ହରେକୃଷ୍ଣ ମହତାବ ଫାଉଣ୍ଡେସନ**

କଟକ-୭୫୩ ୦୦୨

ମୂଲ୍ୟ : ଦଶ ଟଙ୍କା

**We pay our homage to**
**Dr. Harekrushna Mahtab**
**on occassion of his**
**103rd Birth Anniversary**



*Courtesy :*

# M/s. Biswal Refrigeration Industries

*(Designer & Manufacturer of Air Conditioner, Deep Freezer, Water Cooler, Bottle Cooler, Refrigerator)*

**Pilgrim Road, College Square, Cuttack-753 003**
**Phone : (671) 2647865, 2648865**

# ସୂଚୀ

# ଚିର ନମସ୍ୟ ମହତାବ

ସୂର୍ଯ୍ୟକାନ୍ତ ଦାସ

ଆଜି ଆମ ଓଡ଼ିଶା ରାଜ୍ୟରେ ଶିକ୍ଷା କ୍ଷେତ୍ରରେ, ଚିକିତ୍ସା ସୁବିଧା ଅଗ୍ରଗତିରେ, ପ୍ରଶାସନରେ, କଳା ଓ ସଂସ୍କୃତି ବ୍ୟାପାରରେ ଯେଉଁମାନେ ସୁପ୍ରତିଷ୍ଠିତ ହୋଇଛନ୍ତି, ସେମାନଙ୍କ ମଧ୍ୟରୁ ଅନେକ ବ୍ୟକ୍ତିଙ୍କୁ ଡକ୍ଟର ହରେକୃଷ୍ଣ ମହତାବ ୧୯୫୦, ୧୯୬୦, ୧୯୭୦ ଦଶକରେ ସୁବିଧା ସୁଯୋଗ ଓ ସହାୟତା ପ୍ରଦାନ କରିଛନ୍ତି । ମହତାବଙ୍କ ଯୋଗୁଁ ଅନେକ ବ୍ୟକ୍ତି ଓଡ଼ିଶା ରାଜ୍ୟରେ ସାଫଲ୍ୟ ମଣ୍ଡିତ ହୋଇଛନ୍ତି । ରାଜନୀତି କ୍ଷେତ୍ରରେ ଅନେକ ବଡ଼ ବଡ଼ ନେତା, ସାହିତ୍ୟ ସଂଗୀତ କ୍ଷେତ୍ରରେ ପ୍ରସିଦ୍ଧ ବ୍ୟକ୍ତି, ଶିକ୍ଷା ଜଗତରେ କଲେଜ ଓ ବିଶ୍ୱବିଦ୍ୟାଳୟ ଅଧ୍ୟାପକ ଅଧ୍ୟାପିକା, କ୍ରୀଡ଼ା କସରତ ବ୍ୟାପାରରେ କୃତିତ୍ୱ ଅର୍ଜନ କରିଥିବା ଅନେକ ବ୍ୟକ୍ତି ହରେକୃଷ୍ଣ ମହତାବଙ୍କ ଆଶୀର୍ବାଦଲଭି ଯଶସ୍ୱୀ ହୋଇଛନ୍ତି । ଡକ୍ଟର ମହତାବ ବାରବାଟି ଷ୍ଟାଡ଼ିୟମ୍ ପ୍ରତିଷ୍ଠା କରାଇ କ୍ରୀଡ଼ା କ୍ଷେତ୍ରରେ ଓଡ଼ିଶାର ଯୁବକ ଯୁବତୀଙ୍କୁ ଉତ୍ସାହିତ କରାଇଛନ୍ତି । ଖବର କାଗଜ ପ୍ରଜାତନ୍ତ୍ର, ପତ୍ରିକା ଝଙ୍କାର, ସାହିତ୍ୟ ସମ୍ମିଳନୀ ବିଷୁବ ମିଳନ ଆଜି ଆମ ମାନସ ପଟରେ ଯେଉଁ ପ୍ରତିଷ୍ଠା ଅର୍ଜନ କରିଛନ୍ତି, ଏହା ଡକ୍ଟର ମହତାବଙ୍କ ଯୋଗୁଁ ସମ୍ଭବ ହୋଇଛି । ବିଷୁବ ପୁରସ୍କାର ପ୍ରଦାନ ଆରମ୍ଭ ହେବା ପୂର୍ବରୁ କବି, ଲେଖକ, ସାହିତ୍ୟିକମାନଙ୍କ ଲାଗି କୌଣସି ପୁରସ୍କାର ବ୍ୟବସ୍ଥା ଓଡ଼ିଶାରେ ନଥିଲା । ଡକ୍ଟର ମହତାବ ଏ ବ୍ୟାପାରରେ ଅଗ୍ରଣୀ ହୋଇଥିଲେ । ଶିଶୁମାନଙ୍କୁ କ୍ରୀଡ଼ା କସରତ ସାହିତ୍ୟ ଚର୍ଚ୍ଚାରେ ଉତ୍ସାହିତ କରିବା ନିମିତ୍ତ ମୀନା ବଜାର ଉଦ୍ୟମ ଆରମ୍ଭ କରିଥିଲେ । ଜହ୍ନମାମୁ... 

ଭୁବନେଶ୍ୱରକୁ ଓଡ଼ିଶାର ରାଜଧାନୀ ରୂପେ ଗଢ଼ି ତୋଳିଛନ୍ତି ଡକ୍ଟର ହରେକୃଷ୍ଣ ମହତାବ । ଆମେ ଯେତେ ଲୋକ ଆଜି ଭୁବନେଶ୍ୱର ଅଧିବାସୀ ହୋଇ ଯାହା କିଛି ସୁଖ ସ୍ୱାଚ୍ଛନ୍ଦ୍ୟ ଉପଭୋଗ କରୁଛୁ, ଏହାର ମୂଳ ସ୍ରଷ୍ଟା ଅଟନ୍ତି ଡକ୍ଟର ହରେକୃଷ୍ଣ ମହତାବ । ତାଙ୍କ ଦୂରଦୃଷ୍ଟି ଯୋଗୁଁ ଭୁବନେଶ୍ୱର ଓଡ଼ିଶାର ରାଜଧାନୀ ରୂପେ ବଛା ଗଲା ଏବଂ ନବ ନିର୍ମାଣ

ଯୁଗ ଆରମ୍ଭ ହେଲା । ଭୁବନେଶ୍ୱର ନୂତନ ନଗରୀ ନିର୍ମାଣରେ ଡକ୍ଟର ମହତାବଙ୍କ ଅବଦାନ ଇତିହାସରେ ଯୁଗ ଯୁଗ ଧରି ସ୍ମରଣୀୟ ହୋଇ ରହିଥିବ । ଆମେ ପ୍ରତ୍ୟେକ ଭୁବନେଶ୍ୱର ନାଗରିକ ପ୍ରତିଦିନ ଡକ୍ଟର ହରେକୃଷ୍ଣ ମହତାବଙ୍କ ଉଦ୍ଦେଶ୍ୟରେ ମଥା ଅବନତ କରିବା ଉଚିତ; ଏହା ମୋର ଦୃଢ଼ ମତ ।

ଶିକ୍ଷା ପ୍ରସାରରେ ଡକ୍ଟର ମହତାବଙ୍କ ଅବଦାନ ଚିର ସ୍ମରଣୀୟ ଅଟେ । ଓଡ଼ିଶା ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଡିଗ୍ରୀ ହାସଲ କରିଥିଲେ । ଏହା ତାଙ୍କ ଇତିହାସ ଗବେଷଣା ନିମନ୍ତେ ପିଏଚ୍.ଡି. ଡ଼ିଗ୍ରୀ । ସମ୍ମାନ ସୂଚକ ଡକ୍ଟରେଟ୍ ନୁହେଁ । ପଚାଶ ଦଶକରେ ଓଡ଼ିଶା ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ଗବେଷଣାରେ ଲିପ୍ତ ହୋଇ ସାଧନା, ସିଦ୍ଧି ବଳରେ ଆନ୍ଧ୍ର ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଡିଗ୍ରୀ ଅର୍ଜନ କରିଥିଲେ । ଗୋଟିଏ ରାଜ୍ୟର ମୁଖ୍ୟମନ୍ତ୍ରୀ ଦାୟିତ୍ୱ ବହନ କରି ସୁଦ୍ଧା ପିଏଚ୍.ଡି. ଗବେଷଣା କରିବାର ମାନସିକ ପ୍ରସ୍ତୁତି ଓ ସାମର୍ଥ୍ୟ ତାଙ୍କର ରହିଥିଲା ।

ଯୁବକ ସମାଜରେ ଡକ୍ଟର ହରେକୃଷ୍ଣ ମହତାବ ବିଶେଷ ଆଶା, ଉଦ୍ଦୀପନା ଓ ଉତ୍ସାହ ସୃଷ୍ଟି କରୁଥିଲେ । ବିଭିନ୍ନ ଛାତ୍ର ସଂଗଠନ ବାର୍ଷିକ ଅଧିବେଶନରେ ଡକ୍ଟର ମହତାବ ଅନେକ ପ୍ରେରଣା ଦାୟକ ଭାଷଣ ଦେଇଛନ୍ତି । ସଭା ଆରମ୍ଭ ହେବା ପୂର୍ବରୁ ଏବଂ ସଭା ସମାପ୍ତି ପରେ, ଛାତ୍ରଛାତ୍ରୀ, ତରୁଣ ତରୁଣୀମାନେ ଡକ୍ଟର ମହତାବଙ୍କୁ ଘେରି ତାଙ୍କ ପଛେ ପଛେ ଚାଲୁଥିଲେ । ମହତାବଙ୍କ ଠାରେ ଥିବା ଅନାବିଳ ପ୍ରେମ ଓ ଛାତ୍ରବତ୍ସଳତା, ତାଙ୍କଠାରୁ ଅନେକ ନୂଆ କଥା ଛାତ୍ରଛାତ୍ରୀମାନେ ଶିଖିବାକୁ ପାଉଥିଲେ ବୋଲି କଲେଜ ବାରଣ୍ଡାରେ ମହତାବ ଚାଲିଲା ବେଳେ ତାଙ୍କୁ ଅନୁସରଣ କରି ଅସଂଖ୍ୟ ଛାତ୍ରଛାତ୍ରୀ ତାଙ୍କ ଅନୁଗାମୀ ହେଉଥିଲେ ।

ହରେକୃଷ୍ଣ ମହତାବ ଫେଶନ୍ ପ୍ରିୟ ଥିଲେ । ୧୯୪୮-୪୯ ମସିହାରେ ଆମ ଓଡ଼ିଶା ରାଜ୍ୟରେ ହାୱାଇ ସାର୍ଟ କିମ୍ବା ହାୱାଇ ଚପଲ୍ ଲୋକମାନେ ଦେଖି ନଥିଲେ । ମହତାବ ଥରେ ସମ୍ବଲପୁର କଲେଜ ଯାଇଥିଲେ । ସେତେବେଳେ ସେ କଲେଜ ନାମ ଥିଲା ସମ୍ବଲପୁର କଲେଜ । ଗଙ୍ଗାଧର ମେହେର କଲେଜ ନୂଆ ନାମ ହୋଇନଥିଲା ସେ ପର୍ଯ୍ୟନ୍ତ । ମହତାବ ହାୱାଇ ଚପଲ୍ ପିନ୍ଧି ଯାଇଥିଲେ । ସଫେଦ୍ ହାୱାଇ ଚପଲ୍ ତାଙ୍କ ପାଦରେ ଶୋଭା ପାଉଥିଲା । ଛାତ୍ରମାନେ ମହତାବଙ୍କ ଚପଲ୍‌କୁ ନିରୀକ୍ଷଣ କରି ଦେଖୁଥିଲେ । ସେ ସମୟରେ ଦିଲ୍ଲୀ କଲିକତାରେ ହାୱାଇ ଚପଲ୍ କିଣିବାକୁ ମିଳୁଥିଲା । ସମ୍ବଲପୁରରେ ଥିବା ଜୋତା ଦୋକାନୀ ବି ହାୱାଇ ଚପଲ୍ ପଦାର୍ଥ ଦେଖି ନଥିଲେ । ଡକ୍ଟର ହରେକୃଷ୍ଣ ମହତାବ ନାନା ବ୍ୟାପାରରେ ଯୁଗାନ୍ତକାରୀ ପରିବର୍ତ୍ତନ ଘଟାଇଛନ୍ତି । ଆମ ଚିନ୍ତାରାଜ୍ୟରେ ବିପ୍ଳବ ସୃଷ୍ଟି କରିଛନ୍ତି । ସର୍ବ

ପ୍ରଥମେ କଟକରୁ ଦୈନିକ ଇଂରାଜୀ ଖବର କାଗଜ ''ଇଷ୍ଟର୍ଣ୍ଣ ଟାଇମ୍ସ'' ପ୍ରକାଶ କରିବା ଥିଲା ତାଙ୍କର ଅସାଧାରଣ କୃତିତ୍ୱ ।

ରାଜ୍ୟରେ ମୁଖ୍ୟମନ୍ତ୍ରୀ ହୋଇଛନ୍ତି, କେନ୍ଦ୍ର ସରକାର ମନ୍ତ୍ରିମଣ୍ଡଳରେ ଗୁରୁତ୍ୱପୂର୍ଣ୍ଣ ପଦବୀ ଅଳଙ୍କୃତ କରିଛନ୍ତି, ବମ୍ବେ ପ୍ରଦେଶର ଗଭର୍ଣ୍ଣର ହୋଇଛନ୍ତି । ସର୍ବ ଭାରତୀୟ ସ୍ତରର ଆଦରଣୀୟ ନେତା ରୂପେ ଡକ୍ଟର ହରେକୃଷ୍ଣ ମହତାବ ନିଜ ରାଜ୍ୟ, ନିଜ ଦେଶର ଅଶେଷ କଲ୍ୟାଣ ସାଧନ କରିଛନ୍ତି । ସେ ଥିଲେ ଯୋଗଜନ୍ମା ପୁରୁଷ, ଦୂରଦ୍ରଷ୍ଟା, ଅଧ୍ୟବସାୟୀ, ଅନବରତ ଜିଜ୍ଞାସୁ । ତାଙ୍କ କବିତା, ଗଳ୍ପ, ଉପନ୍ୟାସ ଓ ଗାଁ ମଜଲିସର ଭାଷା କିପରି ସରସ, ସୁନ୍ଦର, ସାବଲୀଳ ଓ ମର୍ମସ୍ପର୍ଶୀ ଅଟେ, ତାହା ଆମେ ପ୍ରତ୍ୟେକ ପାଠକ ସ୍ମରଣ ରଖିଛୁ ।

ଡକ୍ଟର ମହତାବ ସମଗ୍ର ଓଡ଼ିଶାର ଚିତ୍ର ବଦଳାଇ ଦେଇଛନ୍ତି । ଅନେକ ଓଡ଼ିଆଙ୍କୁ ଭାଗ୍ୟବାନ କରାଇଛନ୍ତି । ପରଲୋକ ଗମନ ପରେ ଡକ୍ଟର ହରେକୃଷ୍ଣ ମହତାବ ଓଡ଼ିଶାରେ ଯେଉଁ ଶୂନ୍ୟ ସ୍ଥାନ ଛାଡ଼ି ଦେଇ ଯାଇଛନ୍ତି, ତାହା ସେମିତି ଅପୂରଣୀୟ ହୋଇ ରହିବ । କିନ୍ତୁ ଓଡ଼ିଶାକୁ ଯେଉଁମାନେ ବର୍ତ୍ତମାନ ଶାସନ କରୁଛନ୍ତି, ଭବିଷ୍ୟତରେ କ୍ଷମତା ହାସଲ ଲାଗି ଲାଳସା ରଖିଛନ୍ତି, ସେମାନେ ମହତାବଙ୍କ ଜୀବନୀ ଓ କାର୍ଯ୍ୟଧାରାକୁ ତନ୍ନ ତନ୍ନ ଅନୁଧ୍ୟାନ କରିବା ଉଚିତ୍ । ସାହିତ୍ୟିକ, ରାଜନୀତି ବିଶାରଦ, ପ୍ରଶାସକ, ଜନଗଣଙ୍କ ଶ୍ରଦ୍ଧା ଭାଜନ ମହାନ ବ୍ୟକ୍ତିତ୍ୱରୁ ଅନେକ ପ୍ରେରଣା ମିଳିବ- ଯଦି ଆମେ ନିତି ଦିନ ହରେକୃଷ୍ଣ ମହତାବଙ୍କ ଆଦର୍ଶକୁ ଆମ ହୃଦୟ କନ୍ଦରରେ ବିରାଜମାନ କରାଇ ପାରିବୁ ।



# ନବ ଉତ୍କଳର ପ୍ରତିଷ୍ଠାତା : ଡକ୍ଟର ମହତାବ

ଡାକ୍ତର ଯୋଗେଶ ରାଉତ

୧୯୨୯ ମସିହାରେ ଡେଲାଙ୍ଗଠାରେ ଜାତୀୟ କଂଗ୍ରେସର ସମ୍ମିଳନୀ ହୋଇଥିଲା । ଗାନ୍ଧିଜୀ ଆସିଥାନ୍ତି । ଅଗରପଡ଼ାର ମହତାବ ରାଜା ହୋଇଥିଲେ ସୁଦ୍ଧା ଦେଶ ସ୍ୱାଧୀନତାରେ ବ୍ରତୀ ହୋଇ ତାଳପତ୍ର କୁଡ଼ିଆ ଘରେ ରହି ଉକ୍ତ ସମ୍ମିଳନୀର ସାଫଲ୍ୟରେ ପ୍ରମୁଖ ଭୂମିକା ନେଇଥିଲେ । ଗାନ୍ଧିଜୀ ବ୍ରିଟିଶ ଶାସନରୁ ମୁକ୍ତ ହେବା ପାଇଁ ୧୯୪୨ ମସିହା ଅଗଷ୍ଟ ୮ ତାରିଖରେ ଭାରତ ଛାଡ଼ ଆନ୍ଦୋଳନର ଡାକରା ଦେଇଥାନ୍ତି । ମହତାବ ବାବୁ ଜାତୀୟ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ଭାବରେ ଭାରତଛାଡ଼ ଆନ୍ଦୋଳନରେ ଝାସଦେଇ ବମ୍ବେରେ ଆରେଷ୍ଟ ହୋଇଥିଲେ ଓ ଅହମ୍ମଦାବାଦ ଦୁର୍ଗରେ ବନ୍ଦୀ ହୋଇରହିଥିଲେ । ଓଡ଼ିଶାରେ ଉକ୍ତ ସମ୍ବାଦ ପ୍ରଚାରିତ ହେବାରେ ଓଡ଼ିଶାରେ ସ୍ୱାଧୀନତା ଆନ୍ଦୋଳନ ତେଜି ଉଠିଥିଲା ଓ ଆମପରି ଅଗଣିତ ଛାତ୍ର ସ୍କୁଲ/କଲେଜ ଶିକ୍ଷା ବର୍ଜନ କରି ଆନ୍ଦୋଳନରେ ମାତିଲୁ ।

ମହତାବବାବୁ ୧୯୪୬ ମସିହାରେ ଓଡ଼ିଶାର ପ୍ରଧାନମନ୍ତ୍ରୀ ହେଲେ ଏହି ବିଶାଳ ଉତ୍କଳ ଗଠନରେ ମନପ୍ରାଣ ଢାଳିଦେଲେ । ନୀଳଗିରି ଗଡ଼ଜାତରେ ତାଙ୍କ ନେତୃତ୍ୱରେ ନୀଳଗିରି ପ୍ରଜା ଆନ୍ଦୋଳନ ତୀବ୍ରତର ହୋଇଥିଲା । ଭାରତରେ ପ୍ରଥମେ ନେତୃତ୍ୱ ନେଇ କେନ୍ଦ୍ର ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ବଲ୍ଲଭ ଭାଇ ପଟେଲଙ୍କ ଉପସ୍ଥିତିରେ ୧୯୪୮ ମସିହା ଡିସେମ୍ବର ୧୪ ତାରିଖରେ ଓଡ଼ିଶାର ୨୬ ଗଡ଼ଜାତକୁ ଏକାକଲମ ଗାରକେ ଓଡ଼ିଶା ପ୍ରଦେଶରେ ମିଶାଇ ବୃହତ ଉତ୍କଳ ଗଠନ କରିପାରିଥିଲେ । ଦୃଢ଼ ପ୍ରଶାସକ ଭାବରେ ସୁନାମ ଅର୍ଜନ କରି ଉତ୍କଳ କେଶରୀ ହୋଇପାରିଥିଲେ । ତାଙ୍କର ପଦକ୍ଷେପ ଭାରତର ଅନ୍ୟ ଗଡ଼ଜାତମାନଙ୍କୁ କ୍ଷେପି ଯାଇଥିଲା । ମହତାବବାବୁଙ୍କ ପଦକ୍ଷେପ ଅନୁସରଣରେ ଲୌହ ମାନବ ସର୍ଦ୍ଦାର ପଟେଲ ଭାରତର ସମସ୍ତ ଗଡ଼ଜାତକୁ ମିଶାଇ ଅଖଣ୍ଡ ଭାରତ ଗଠନ କରିଥିଲେ । ସେତିକିରେ ସେ ସନ୍ତୁଷ୍ଟ ହୋଇ ନଥିଲେ । ଓଡ଼ିଶାରୁ ଦାରିଦ୍ର୍ୟ ଘୁଞ୍ଚାଇବା ପାଇଁ

କୃଷି ଉତ୍ପାଦନ ବୃଦ୍ଧି ଦୃଷ୍ଟେ ଜଳସେଚନକୁ ପ୍ରାଧାନ୍ୟ ଦେଇଥିଲେ । ବହୁ ବିରୋଧ ସତ୍ତ୍ୱେ ହୀରାକୁଦ ବନ୍ଧର ଶୁଭ ଦେଇଥିଲେ । ଉକ୍ତ ବନ୍ଧ ଫଳରେ କଟକ, ପୁରୀ ଜିଲ୍ଲାବାସୀମାନେ ବନ୍ୟା ଏବଂ ମରୁଡ଼ିରୁ ରକ୍ଷା ପାଇଥିଲେ ଏବଂ ହୀରାକୁଦ ତଳ ଅଞ୍ଚଳରେ ସମ୍ବଲପୁର ଓ ବରଗଡ଼ ଶସ୍ୟଶ୍ୟାମଳା ହୋଇଥିଲା । ଗ୍ରାମମାନଙ୍କରେ ବିଜୁଳି ଝଲକି ଉଠିଥିଲା । ଗଞ୍ଜାମର ରଙ୍ଗେଇଲୁଣ୍ଡା ବା କଟକର ଚୌଦ୍ୱାରଠାରେ ନୂଆ ରାଜଧାନୀ ପାଇଁ ଦୃଢ଼ ଦାବି ହୋଇଥିଲେ ସୁଦ୍ଧା ସମସ୍ତ ପ୍ରସ୍ତାବକୁ ଆଡ଼େଇଦେଇ ସେ ଇତିହାସପ୍ରସିଦ୍ଧ ଖାରବେଳଙ୍କ ରାଜଧାନୀ ତୋଷଳୀ ନଗର ତଥା ମନ୍ଦିରମାଳିନୀ ଭୁବନେଶ୍ୱରଠାରେ ନୂଆ ରାଜଧାନୀ ସ୍ଥାପନରେ ଆଗେଇ ଯାଇଥିଲେ । ଆମେ କେତେକ ମେଡ଼ିକାଲ ଛାତ୍ର ଓ ବିଶିଷ୍ଟ ସରକାରୀ ଓ ବେସରକାରୀ ବ୍ୟକ୍ତି ତଥା ମନ୍ତ୍ରୀମାନଙ୍କ ଗହଣରେ ମୁଖ୍ୟମନ୍ତ୍ରୀ ମହତାବ ବାବୁଙ୍କ ନିମନ୍ତ୍ରଣରେ ଭାରତର ପ୍ରଧାନମନ୍ତ୍ରୀ ଜବାହରଲାଲ ନେହେରୁ ଭୁବନେଶ୍ୱରର ବୁଦୁବୁଦୁକିଆ ଜଙ୍ଗଲ ଭିତରେ ୧୯୪୮ ମସିହା ଅପ୍ରେଲ ପହିଲାରେ ଓଡ଼ିଶାର ନୂତନ ରାଜଧାନୀର ଶୁଭ ଦେଇଥିଲେ । ୧୯୫୦ ମସିହା ମଇ ମାସରେ ଯେ କେନ୍ଦ୍ରରେ ବାଣିଜ୍ୟମନ୍ତ୍ରୀ ଭାବରେ ଦକ୍ଷତା ପ୍ରତିପାଦନ କରିଥିଲେ । ୧୯୫୨ ସାଧାରଣ ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ଭାବରେ ଲୋକସଭାକୁ ନିର୍ବାଚିତ ହୋଇ କଂଗ୍ରେସ ପାର୍ଲାମେଣ୍ଟାରୀ ଦଳର ଉପାଧ୍ୟକ୍ଷ ହୋଇଥିଲେ । ପରବର୍ତ୍ତୀ କାଳରେ ବମ୍ବେର ଗଭର୍ଣ୍ଣର ହୋଇଥିଲେ । ୧୯୫୬ରେ ମୁଖ୍ୟମନ୍ତ୍ରୀ ନବକିଶୋର ଚୌଧୁରୀଙ୍କ ବିରୁଦ୍ଧରେ ସୀମା ଆନ୍ଦୋଳନ ତୀବ୍ର ହୋଇପଡ଼ିଥିଲା । ଏଣୁ ୧୯୫୬ ଅକ୍ଟୋବରରେ ମହତାବବାବୁ ପୁନଶ୍ଚ ମୁଖ୍ୟମନ୍ତ୍ରୀ ହୋଇ ଦ୍ୱିତୀୟ ସାଧାରଣ ନିର୍ବାଚନର ଦାୟିତ୍ୱ ନେଇଥିଲେ । ଓଡ଼ିଶା ବିଧାନସଭା ନିର୍ବାଚନରେ କଂଗ୍ରେସ ଏକକ ସଂଖ୍ୟାଗରିଷ୍ଠ ଦଳ ହୋଇଥିଲେ ସୁଦ୍ଧା ଚାଣକ୍ୟ ବୁଦ୍ଧିରେ ମହତାବବାବୁ ଝାଡ଼ଖଣ୍ଡ ବିଧାୟକମାନଙ୍କ ସହାୟତାରେ ପୁଣି ଥରେ ଓଡ଼ିଶାରେ ମୁଖ୍ୟମନ୍ତ୍ରୀ ହୋଇପାରିଥିଲେ । ଓଡ଼ିଶାର ଉନ୍ନତିକଳ୍ପେ ରାଜନୈତିକ ସ୍ଥିରତା ଅପରିହାର୍ଯ୍ୟ ହେବାରୁ ଟାଣୁଆ ବିରୋଧୀ ଦଳ ଗଣତନ୍ତ୍ର ପରିଷଦକୁ ମିଶାଇ ସରକାର ଗଢ଼ିବାର ମସୁଧା କରିଥିଲେ ଏବଂ ୧୯୫୯ ମସିହାରେ କଂଗ୍ରେସ-ଗଣତନ୍ତ୍ର ପରିଷଦର ମିଳିତ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା । ତାଙ୍କର ଦୃଢ଼ ସମର୍ଥକ ବିଜୁବାବୁ ଉକ୍ତ ମିଳନକୁ ହଜମ ନକରିବାରୁ କଂଗ୍ରେସ ବିଧାୟକମାନଙ୍କ ଭିତରେ ବିଭାଜନ ହେବାର ଆଶଙ୍କା ହେବାରୁ ମହତାବବାବୁ ୧୯୬୧ ମସିହା ଫେବୃଆରୀ ମାସରେ ମୁଖ୍ୟମନ୍ତ୍ରୀ ପଦରୁ ଇସ୍ତଫା ଦେଇ ରାଷ୍ଟ୍ରପତି ଶାସନ ଜାରି କରାଇଥିଲେ । ମୁଁ କିନ୍ତୁ ମହତାବବାବୁଙ୍କର ଦୃଢ଼ ସମର୍ଥକ ହୋଇଥିଲି । ୧୯୫୭ରୁ ତାଙ୍କର ସଂସ୍ପର୍ଶରେ ଆସି ବାଙ୍କୀ କଲେଜ ସ୍ଥାପନରେ ଆଗେଇ ଯାଇଥିଲି । ୧୯୭୦ ମସିହା ଡିସେମ୍ବର ୧ ତାରିଖରେ ସେ ବାଙ୍କୀ କଲେଜର ଶୁଭ ଦେଇଥିଲେ ।

ମହତାବବାବୁ ଅଭିଭାବକ ଭାବରେ ମୋର ଜୀବନକୁ ବହୁ ଭାବରେ ପ୍ରଭାବିତ କରିପାରିଥିଲେ । ବିଶେଷକରି ସମବାୟ ଆନ୍ଦୋଳନ ପ୍ରସାରରେ ସେ ମୋତେ ଉତ୍ସାହିତ କରିଥିଲେ ଏବଂ ତାଙ୍କର ପ୍ରେରଣାରେ ମୁଁ ସମବାୟ ସମ୍ବନ୍ଧୀୟ ବହୁ ପ୍ରବନ୍ଧ ଲେଖିପାରିଥିଲି । ମହତାବବାବୁ ଜଣେ ବିଚକ୍ଷଣ ରାଜନୀତିଜ୍ଞ ଥିବାରୁ ୧୯୬୨ର ତୃତୀୟ ସାଧାରଣ ନିର୍ବାଚନରେ କଂଗ୍ରେସ ପ୍ରାର୍ଥୀ ଭାବରେ ଦେବଗଡ଼ ଲୋକସଭା ଆସନରୁ ପୁନର୍ବାର ପାର୍ଲାମେଣ୍ଟକୁ ଅପ୍ରତିଦ୍ୱନ୍ଦ୍ୱୀ ଭାବରେ ନିର୍ବାଚିତ ହୋଇଥିଲେ । ସେ ବାଙ୍କୀର ଶୁଭାକାଂକ୍ଷୀ ଭାବରେ ତାଙ୍କର ବାଲ୍ୟଗୁରୁ ପଣ୍ଡିତ ରଘୁନାଥ ମିଶ୍ରଙ୍କ ଇଚ୍ଛା ଅନୁଯାୟୀ ବାଙ୍କୀ ହାଇସ୍କୁଲକୁ ୧୯୪୮ରେ ସରକାରୀ ହାଇସ୍କୁଲରେ ପରିଣତ କରିଥିଲେ । ୧୯୬୪ରେ ମୁଖ୍ୟମନ୍ତ୍ରୀ ସଦାଶିବ ତ୍ରିପାଠୀ ବାଙ୍କୀକୁ ତହସିଲ କରିଥିଲେ । ୧୯୬୨ରେ ସେ ମୁଖ୍ୟମନ୍ତ୍ରୀ ହୋଇ ନ ଥିଲେ ସୁଦ୍ଧା ପ୍ରବୀଣ ବିଧାୟକ ଭାବରେ ସ୍ୱତନ୍ତ୍ର ଓ ଜନକଂଗ୍ରେସ ମନ୍ତ୍ରିମଣ୍ଡଳକୁ ପ୍ରଭାବିତ କରି ୧୯୬୯ରେ ବାଙ୍କୀକୁ ସବଡିଭିଜନ ଘୋଷଣା କରାଇ ପାରିଥିଲେ । ଏପରି ବହୁବିଧ ଉନ୍ନତି ତଥା ବାଙ୍କୀର ସମ୍ମାନ ରଖିଥିବାରୁ ସେ ବାଙ୍କୀବାସୀଙ୍କର ନମସ୍ୟ ।

ମହତାବବାବୁ ଏକାଧାରରେ ବିଶିଷ୍ଟ ସ୍ୱାଧୀନତାସଂଗ୍ରାମୀ ତଥା ଦୃଢ଼ ଓ ଦକ୍ଷ ପ୍ରଶାସକ ହେବା ସଙ୍ଗେ ସଙ୍ଗେ ଜଣେ ସାହିତ୍ୟିକ, ଐତିହାସିକ, ନାଟ୍ୟକାର ଭାବରେ ଓଡ଼ିଶାରେ ପ୍ରଶଂସିତ । ବୃଦ୍ଧ ବୟସରେ ସେ ପ୍ରତ୍ୟହ ଏକାମ୍ର ନିବାସ ତଥା ପ୍ରଜାତନ୍ତ୍ର ପରିସରରେ ବହୁ ଲୋକଙ୍କୁ ସାକ୍ଷାତ କରି ସେମାନଙ୍କର ଅଭାବଅସୁବିଧା ଦୂର କରିବାରେ ସହାୟକ ହେଉଥିଲେ । ତାଙ୍କର ଗାଁ ମଜଲିସ୍ ଲେଖା ସରକାରଙ୍କୁ ଲୋକାଭିମୁଖୀ ତଥା ସଚେତନ କରିପାରୁଥିଲା । ବହୁ ଗରିବ ମେଧାବୀ ଛାତ୍ରଙ୍କୁ ଆର୍ଥିକ ସାହାଯ୍ୟ କରିବା ସହିତ ବିଭିନ୍ନ ଅଞ୍ଚଳରେ ସ୍କୁଲ, କଲେଜ ସ୍ଥାପନରେ ଉଦ୍ୟୋକ୍ତାମାନଙ୍କୁ ପ୍ରୋତ୍ସାହିତ କରିପାରିଥିଲେ ।



# ଇସ୍ପାତ-ମାନବ ମହତାବଙ୍କ ରାଜନୈତିକ ଦର୍ଶନ

ପ୍ରଫେସର ଡକ୍ଟର ଭ୍ରମରବର ଜେନା

ଡକ୍ଟର ହରେକୃଷ୍ଣ ମହତାବ ଜଣେ ଯୁଗଦ୍ରଷ୍ଟା ଓ ମୌଳିକ ପ୍ରତିଭା ସମ୍ପନ୍ନ ଅନୁଷ୍ଠାନ । ଜାତିଗଠନ ଓ ନେତା ଗଠନରେ ଆଜୀବନ ଉତ୍ସର୍ଗୀକୃତ ମହାମାନବ । ବହୁ ଗୁଣର ସମଷ୍ଟି, ବହୁ ପ୍ରତିଭାର ଚଳନ୍ତି ପ୍ରତିମା ଏବଂ ବହୁ ଅନନ୍ୟ ତତ୍ତ୍ୱର ସେ ଥିଲେ ସ୍ରଷ୍ଟା । ରାଜନୈତିକ, ସାଂସ୍କୃତିକ, ସାମାଜିକ, ସାହିତ୍ୟିକ, ଦାର୍ଶନିକ, ସାମ୍ବାଦିକ ଆଦି ସବୁ କ୍ଷେତ୍ରରେ ତାଙ୍କର ଅମ୍ଳାନ ଅବଦାନ ତାଙ୍କୁ ଚିର ବନ୍ଦନୀୟ କରିପାରିଛି । ସଂକ୍ଷେପରେ କହିଲେ ସେ ଜାତୀୟ ଜୀବନ ଗଠନରେ ଅନେକ ସୂତ୍ର ପ୍ରଦାନ କରି ଆଜି ଭାରତରେ ଅଦ୍ୱିତୀୟ ହୋଇ ପାରିଛନ୍ତି ।

## ରାଜନୈତିକ ଦର୍ଶନ

ଯେଉଁ ରାଜନୈତିକ ଚିନ୍ତାଧାରା ସିଦ୍ଧାନ୍ତ ଓ ତତ୍ତ୍ୱ ରୂପେ ଗୃହୀତ ହୁଏ, ତାକୁ ରାଜନୈତିକ ଦର୍ଶନ କୁହାଯାଏ । ବ୍ୟବହାରିକ ତତ୍ତ୍ୱ ସର୍ବବ୍ୟାପକ ଆଦୃତ ଚିନ୍ତାରେ ପର୍ଯ୍ୟବସିତ ହେଲେ ତାହା ମଧ୍ୟ ରାଜନୈତିକ ଦର୍ଶନ ରୂପେ ମାନ୍ୟତା ପାଇଥାଏ । ଡକ୍ଟର ମହତାବଙ୍କ କେତେକ ସ୍ୱତନ୍ତ୍ର ଚିନ୍ତା ଓ ସେସବୁର ସାମଗ୍ରିକ ଆକର୍ଷଣ ତାଙ୍କୁ ଜାତୀୟ ଜୀବନରେ ଜଣେ ମୌଳିକ ଦାର୍ଶନିକର ସ୍ଥାନ ଦେଇପାରିଛି ।

**(୧) ସାଂସ୍କୃତିକ ସ୍ୱାଭିମାନ (କ) :** କୌଣସି ଜାତି ନିଜର ସାଂସ୍କୃତିକ ସ୍ୱାଭିମାନ ହାସଲ ନକଲେ ଏବଂ ତାକୁ ଚିରନ୍ତନ ନକଲେ ତାହାର ବିଲୟ ସୁନିଶ୍ଚିତ । ଭାଷାର ସମୃଦ୍ଧି ଜାତିର ପ୍ରାଥମିକ ପରିଚୟ । ଭାଷାର ବିଭିନ୍ନ ବିଭବ ପରିପୁଷ୍ଟ ନ ହେଲେ ଅନ୍ୟ ଦୃଷ୍ଟିରେ ସେ ଜାତି ମାନ୍ୟତା ହରାଇ ବସେ । ସୁସ୍ଥ, ସବଳ, କର୍ମଠ, ହିଂସ୍ରକ ହେଲେ ମଧ୍ୟ ନିଗ୍ରୋମାନଙ୍କୁ ଆମେରିକାରେ ନିଜର ସତ୍ତା ହରାଇ ଅନ୍ୟ

ଭାଷାର ଦାସତ୍ୱ ବରଣ କରି ସେହି ଭାଷାଧୀନ ହୋଇ ରହିବାକୁ ପଡ଼ିଲା । ବହୁ ଦେଶରେ ଏପରି ଭାଷାଧୀନତା ବହୁ ଜାତିକୁ ବିଲୁପ୍ତ କରିଦେଇଛି । ଭାଷାକୁ ପୂର୍ଣ୍ଣାଙ୍ଗ କରିବାକୁ ହେବ ଏବଂ ଜାତିର ପରିଚୟପତ୍ର ହିସାବରେ ଏହାର ସ୍ଥାନ ଯେପରି ଶୀର୍ଷରେ ରହେ, ତାହା ଦେଖିବାକୁ ହେବ । (ଖ) କଳା, ନୃତ୍ୟ, ସଙ୍ଗୀତ, ପର୍ବ ପର୍ବାଣୀ, ଆଚାର ବ୍ୟବହାର ସବୁ କ୍ଷେତ୍ରରେ ଉତ୍କର୍ଷତା ପ୍ରତିପାଦନ କରି ସାଂସ୍କୃତିକ ମହନୀୟତାକୁ ପ୍ରମାଣିତ କରିବାକୁ ହେବ । ଏହା ଥିଲା ଡକ୍ଟର ମହତାବଙ୍କ ଦର୍ଶନ । (ଗ) ପ୍ରଜାତନ୍ତ୍ର ଅନୁଷ୍ଠାନରେ ଲେଖକ ଗଢ଼ା, ନେତା ତିଆରି, ସାହିତ୍ୟର ବିଭିନ୍ନ ବିଭାଗର ଉନ୍ନତି ପାଇଁ ବିଭିନ୍ନ କାର୍ଯ୍ୟକ୍ରମ ଗ୍ରହଣ କରାଗଲା । ଭାଷାର ଓ ସଂସ୍କୃତିର ବୈଭବ, ପରାକାଷ୍ଠା ଏବଂ ଗୌରବ ପ୍ରଦର୍ଶନ ପାଇଁ 'ବିଷୁବ ମିଳନ' ପ୍ରତିଷ୍ଠା କରାଗଲା । ପୁରସ୍କାର ପ୍ରଦାନ ଦ୍ୱାରା ଏକ ଉତ୍ସାହ, ଉଦ୍ଦୀପନା ଏବଂ ଉନ୍ମାଳନର ଗଙ୍ଗା ପ୍ରବାହିତ ହେଲା । ସାଂସ୍କୃତିକ ସ୍ୱାଭିମାନ ସାବ୍ୟସ୍ତ କରି, ପରିବର୍ଦ୍ଧିତ କରି, ଅନ୍ୟ ଭାଷା ଓ ସଂସ୍କୃତିର କର୍ଣ୍ଣଧାରମାନଙ୍କୁ ଉଦ୍‌ଘାଟନୀ ଭାଷଣ ମାଧ୍ୟମରେ ଓଡ଼ିଆଙ୍କ ଗୌରବ ଓ ଐତିହ୍ୟ ତଥା ସଂସ୍କୃତିର ସ୍ତାବକ ହେବାର ବ୍ୟବସ୍ଥା କରାଇ ଡକ୍ଟର ମହତାବ ତାଙ୍କର ମୌଳିକ ରାଜନୈତିକ ଦର୍ଶନ ପ୍ରତିପାଦନ କରିଛନ୍ତି । ତାଙ୍କ ଦିଗ୍‌ଦର୍ଶନ ଫଳପ୍ରସୂ ହୋଇ ପାରିଛି ।

## (୨) ଜାତୀୟ ସଂହତି, ଅଖଣ୍ଡତା ଓ ମିଶ୍ରଣ

ଯେ କୌଣସି ରାଷ୍ଟ୍ରର ମୂଳଦୁଆ ହେଉଛି ଅଖଣ୍ଡତା ଓ ଐକୀକରଣ । ଉପନିବେଶଗୁଡ଼ିକର ସ୍ୱାଧୀନତା ପ୍ରାପ୍ତି ପରେ ପ୍ରଥମ କର୍ତ୍ତବ୍ୟ ହେଲା କିପରି ଦେଶର ଅଖଣ୍ଡତା ବଜାୟ ରହିବ ବା ସାମ୍ବିଧାନିକ ଉପାୟରେ ଏକୀକୃତ ହେବ । ବିଭିନ୍ନ ସୁବିଧା ବା ଆଳ ଦେଖାଇ କେତେକ ଅଞ୍ଚଳ ରାଷ୍ଟ୍ରର ଅଂଗ ହୋଇ ରହିବାକୁ ଚାହାନ୍ତି ନାହିଁ । ସେମାନଙ୍କୁ ଐକୀକରଣ ପ୍ରକ୍ରିୟାରେ ଦେଶର ଅଖଣ୍ଡତାର ସ୍ୱାଦୁ ଚଖାଇବାକୁ ହେବ । ମିଶ୍ରଣ ନୀତି ପ୍ରୟୋଗ କରି ରାଷ୍ଟ୍ରର ସଂହତି ପ୍ରତିଷ୍ଠା କରିବାକୁ ହେବ । ଡକ୍ଟର ମହତାବଙ୍କର ଉକ୍ତ ରାଜନୈତିକ ସିଦ୍ଧାନ୍ତ ଭାରତର ଅଖଣ୍ଡତା ସାବ୍ୟସ୍ତ କରିପାରିଥିଲା । ଯେତେବେଳେ ଇଂରାଜୀ ରାଜତ୍ୱ ଲୋପ ପାଇଲା, ସେହି ସମୟରେ ଭାରତ ସ୍ୱାଧୀନତା ଆଇନ୍ ୧୯୪୭ ପ୍ରବର୍ତ୍ତିତ ହେବା ଯୋଗୁ ୬୦୦ ରୁ ଉର୍ଦ୍ଧ୍ୱ ଗଡଜାତମାନଙ୍କୁ ସର୍ବଭୌମ କ୍ଷମତା ମିଳିଗଲା । ଭାରତର କେତେକ ରାଜା ମହାରାଜା ନିଜକୁ ସ୍ୱାଧୀନ ଦେଶର ସର୍ବେସର୍ବା ରୂପେ ପ୍ରତିଷ୍ଠା କରିବାକୁ ଲାଗିଲେ । ଅନ୍ୟ କେତେକ ରାଜ୍ୟ ମିଳିତ ରାଜ୍ୟ କରି ନିଜର ରାଜପଦ ସାବ୍ୟସ୍ତ ରଖିବା ପାଇଁ ଲାଗିପଡ଼ିଲେ । ଓଡ଼ିଶାର ରାଜାମାନେ ସେମାନଙ୍କ ପ୍ରତିନିଧି ପଠାଇ ହାଇଦରାବାଦ ନିଜାମଙ୍କ ସହିତ ଯୋଗାଯୋଗ ଆରମ୍ଭ କରିଦେଲେ । ଏହି ସମୟରେ ଉତ୍କଳ କେଶରୀ ଡକ୍ଟର ମହତାବ ଭାରତର କେନ୍ଦ୍ର ସ୍ୱରାଷ୍ଟ୍ର ବିଭାଗ

ମନ୍ତ୍ରୀ ଓ ଉପପ୍ରଧାନମନ୍ତ୍ରୀ ସର୍ଦ୍ଦାର ପଟେଲଙ୍କ ସହିତ ଏପରି ଏକ ଭୟଙ୍କର ବିପଦକୁ ମୂଳରୁ ହଟାଇବା ପାଇଁ ଆଲୋଚନା କଲେ । ଓଡ଼ିଶାରୁ ଏହି ରାଜାମାନଙ୍କ ବିଚାର ଛତିଶଗଡ ରାଜାମାନଙ୍କୁ ମଧ୍ୟ ପ୍ରେରଣା ଦେଲା । ସେମାନେ ସବୁ ସାର୍ବଭୌମ ରାଷ୍ଟ୍ର ରୂପେ ନିଜ ରାଜ୍ୟ ଭୋଗ କରିବାର ଯୋଜନା ସାକାର କରିବାକୁ ଯାଉଥିଲେ । ଜାତୀୟ ସଂହତି ବିପନ୍ନ ହୋଇ ଉଠିଲା । ଅଖଣ୍ଡତା ସ୍ୱପ୍ନରେ ପରିଣତ ହେବାକୁ ଯାଉଥାଏ । ଡକ୍ଟର ମହତାବଙ୍କ ରାଜନୈତିକ ବିଚକ୍ଷଣତା ଓ ଦର୍ଶନ ଥିଲା– 'ଛୋଟ ରାଜ୍ୟମାନଙ୍କୁ ସଂଲଗ୍ନ ଥିବା ପ୍ରଦେଶମାନଙ୍କରେ ମିଶ୍ରଣ କରିବା ଆବଶ୍ୟକ । ନଚେତ୍ ତତ୍କାଳୀନ ଶୀତଳ ଯୁଦ୍ଧ ଦ୍ୱାରା ଆକ୍ରାନ୍ତ ବିଶ୍ୱ ରାଜନୈତିକ ପରିବେଶ ଭିତରେ ଏହି ଛୋଟ ଛୋଟ (ସଭରେନ୍) ସର୍ବଭୌମ ରାଷ୍ଟ୍ରମାନେ ବିସ୍ଫୋରକ ରାଷ୍ଟ୍ର ହୋଇ ରହିବେ । ତାକୁ ସମ୍ଭାଳିବାକୁ ନବଜାତ ଭାରତ ସରକାରଙ୍କ ପକ୍ଷରେ କାଠିକର ପାଠ ହୋଇଯିବ ।' ଏହି ନୀତି ଓ ବିଚାର ସ୍ୱାଧୀନତାର ଆଗରୁ ୧୯୪୬ ମସିହା ଅପ୍ରେଲ୍ ୫ ତାରିଖ ଦିନ ଗାନ୍ଧିଜୀଙ୍କ ସମ୍ମୁଖରେ ଉପସ୍ଥାପିତ କରି ଡକ୍ଟର ମହତାବ ଭାରତ ପାଇଁ ଏକ ଗୌରବମୟ ଅଧ୍ୟାୟ ସୃଷ୍ଟି କରିଥିଲେ । ଜାତିର ପିତା ଗାନ୍ଧିଜୀ ଏଥିରେ ଏକମତ ହୋଇ ବଧେଇ ଦେଇଥିଲେ: " Small states should be amalgamated with the nearby province". ଏହି ଦର୍ଶନ ଗାନ୍ଧୀଙ୍କ ସମ୍ମତି ଧରି ନେହ୍ରୁଙ୍କ ପାଖରେ ଉପସ୍ଥାପିତ ହେଲା । ୧୯୪୬ ମସିହା ଜୁନ୍ ୧୦ ତାରିଖ ଦିନ ସେ ମଧ୍ୟ ଏହାକୁ ଗ୍ରହଣ କରି ସାଧୁବାଦ ଦେଇଥିଲେ । ତା' ପରେ ଚାଲିଲା ଇଂରାଜୀ ଶାସନର ଶେଷ ଅସ୍ତ୍ର 'ବ୍ୟୁରୋକ୍ରାଟ୍'ଙ୍କ କୁଚକ୍ରାନ୍ତ ଓ ନୂଆ ମନ୍ତ୍ରୀଙ୍କୁ କୁଟିଳ ଭାଷାରେ ଜଟିଳ କରି ନୋଟ୍‌ସିଟ୍ ପେସ୍ କରାଇବାର ପ୍ରଚେଷ୍ଟା । ସେ କାଳର 'ପଲିଟିକାଲ୍ ଡିପାର୍ଟମେଣ୍ଟ' ହାଇଦ୍ରାବାଦ ନିଜାମଙ୍କ ସମକକ୍ଷ ହେଲା ଭଳି ଏକ Eastern States Union ସୃଷ୍ଟି କରିବାକୁ ପ୍ରସ୍ତାବ ଦେଇଥିଲେ । ଭି.ପି. ମେନନ ଥିଲେ ଏହି ଯୋଜନାର ମୂଳପିଣ୍ଡ । ସ୍ୱାଧୀନତା ପରେ ସେମାନଙ୍କର ବିରୋଧାତ୍ମକ ଯୁକ୍ତିର ସମ୍ମୁଖୀନ ହୋଇଥିଲେ ଡକ୍ଟର ମହତାବ- ଜଗନ୍ନାଥ ମାଟିର 'ଇସ୍ପାତ-ମାନବ ।' ଲୌହ ମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍‌ଙ୍କୁ ଇଂରାଜ-ରାଜର ସ୍ୱାର୍ଥର ପ୍ରହରୀ ଏବଂ କୃତଜ୍ଞତା ପାଖରେ ଆବଦ୍ଧ ବ୍ୟୁରୋକ୍ରାଟ୍‌ମାନଙ୍କ ଷଡଯନ୍ତ୍ର ପଣ୍ଡ କରିବାକୁ ଯୁକ୍ତିସହ ଓ ପ୍ରମାଣସହ ନିବେଦନ କଲେ ଯେ, ଛୋଟ ଛୋଟ ଗଡଜାତମାନଙ୍କୁ ସଂଲଗ୍ନ ପ୍ରଦେଶ ସହିତ ମିଶ୍ରଣ କରିବାର କାର୍ଯ୍ୟକ୍ରମ ଓଡ଼ିଶାରୁ ଆରମ୍ଭ ହେଉ । କାରଣ ଭାରତର ଅଖଣ୍ଡତା ରକ୍ଷା କରିବାର ବାଟ ଓଡ଼ିଶା ଦେଖାଇ ଦେଇଛି । ନୀଳଗିରି ରାଜ୍ୟ 'ମିଶ୍ରଣ' କରାଇ ଭାରତକୁ ନୀଳଗିରି ରାସ୍ତା ଦେଖାଇ ଦିଆଯାଇଛି । ସେହି ପ୍ରମାଣକୁ ପ୍ରସାରିତ କରିବାକୁ ବର୍ତ୍ତମାନ ସମୟ ଆସିଛି । ସର୍ଦ୍ଦାର ପଟେଲ ଡକ୍ଟର

ମହତାବଙ୍କ ନିମନ୍ତ୍ରଣ ଗ୍ରହଣ କରି ନଭେମ୍ବର ମାସ ୧ ୯ ୪ ୭ରେ ଓଡ଼ିଶାରୁ ମିଶ୍ରଣ କାର୍ଯ୍ୟାନୁଷ୍ଠାନ ଆରମ୍ଭ କରିବାକୁ ରାଜି ହେଲେ । ଦିଲ୍ଲୀରେ ୧ ୯ ୪ ୭ ନଭେମ୍ବର ମାସରେ କଥାବାର୍ତ୍ତା ହେଲା । ଡିସେମ୍ବର ୧୩, ୧ ୯ ୪ ୭ ଦିନ ସର୍ଦ୍ଦାର ପଟେଲ ଭୁବନେଶ୍ୱର ବିମାନ ବନ୍ଦରରେ ଓହ୍ଲାଇଲେ । ଲୌହ ମାନବ ପଟେଲ୍ ଆସି ଇସ୍ପାତ ମାନବ ଡକ୍ଟର ମହତାବଙ୍କର ଅତିଥି ହେଲେ । ୨ ୨ ମାଇଲ୍ ରାସ୍ତା ପାର ହେବା ପାଇଁ ତାଙ୍କୁ ପ୍ରାୟ ୨ ଘଣ୍ଟା ଲାଗିଥିଲା । ରାସ୍ତା ତମାମ ମିଶ୍ରଣ ଦାବିରେ ଜନସାଧାରଣଙ୍କର ପଟୁଆର, ସ୍ଲୋଗାନ୍, ପ୍ଲାକାର୍ଡ, ଆହ୍ୱାନ ପଟେଲଙ୍କୁ ଅଭିଭୂତ କରିଦେଇଥିଲା । କଟକ ରାଜଭବନ ଲୋକାରଣ୍ୟ । କଟକ ସହର ନୂତନ ଦର୍ଶନର ମୁଖରିତ ସାକ୍ଷୀ । ସାଥୀରେ ଥିଲେ ମିଷ୍ଟର ସୁନ୍ଦରମ୍ (ଆଇନ୍ ସଚିବ), ଭି.ପି. ମେନନ୍ (ସ୍ୱରାଷ୍ଟ୍ର ବିଭାଗ ସଚିବ) ଓ ବ୍ୟକ୍ତିଗତ ସଚିବ ମିଷ୍ଟର ଶଙ୍କର । ଓଡ଼ିଶାର ଲାଟ୍ ସାହେବ ଡକ୍ଟର କୈଳାଶନାଥ କାଟ୍‌ଜୁଙ୍କ ସ୍ୱାଗତ ଓ ଆତ୍ମୀୟତାର ଭାବ ପ୍ରକାଶ ନଦେଖି କେହି ବିଶ୍ୱାସ କରିପାରିବ ନାହିଁ । ଓଡ଼ିଶାର ରାଜାମାନଙ୍କୁ ସମ୍ବୋଧନ କରି ଲୌହ ମାନବ ପଟେଲ କହିଥିଲେ, 'ଆପଣମାନେ ଶୀଘ୍ର ଓଡ଼ିଶା ସହିତ ମିଶ୍ରଣ ଚୁକ୍ତିରେ ଦସ୍ତଖତ କରି ନିଜକୁ ଓ ଗଡଜାତର ଲୋକଙ୍କୁ ସୁରକ୍ଷିତ କରନ୍ତୁ । ନଚେତ୍ ଆପଣମାନଙ୍କୁ ପ୍ରଜାମଣ୍ଡଳର ଆନ୍ଦୋଳନରୁ ରକ୍ଷା କରିବା ପାଇଁ ଭାରତ ସରକାରଙ୍କୁ ଦାୟିତ୍ୱ ନେବାର ନିବେଦନ ବୃଥା ହୋଇଯିବ । ୧ ୪ ଡିସେମ୍ବର ୧ ୯ ୪ ୭ ଦିନର ଏହି ଘୋଷଣା ଡକ୍ଟର ମହତାବଙ୍କର ରାଜନୈତିକ ଦର୍ଶନର ଏକ ରଙ୍ଗୀନ ଚିତ୍ର । ରାଜାମାନେ ଆଗରୁ ଜାଣିଥିଲେ ଯେ, ଓଡ଼ିଶା ପୁଲିସବାହିନୀର ଆଇଜି ମିଷ୍ଟର ପିଅର୍‌ମେନ୍ ସର୍ଦ୍ଦାର ପଟେଲ୍ ଓଡ଼ିଶା ଛାଡ଼ିବା ପରଦିନ ସବୁ ଗଡଜାତକୁ ନୀଳଗିରି ପରି ଦଖଲ କରି ଭାରତ ସହିତ ମିଶାଇ ନେବାକୁ ପୋଲିସ୍ ବାହିନୀକୁ ଚାରିଆଡେ ମୁତୟନ କରି ଦେଇଛନ୍ତି । ଡିସେମ୍ବର ୧୩ ତାରିଖ ରାତିରେ ଲୌହ ମାନବ ପଟେଲଙ୍କୁ ଏହି ପ୍ରସ୍ତୁତି ଅବଗତ କରାଇ ଦେଇ ଥିଲେ ଡକ୍ଟର ମହତାବ । ତା'ପରେ ୧ ୪ ତାରିଖ ସକାଳ ୯ଟାରେ ରାଜଭବନର ରାଜାମାନଙ୍କ ଦରବାର ସଭାରେ ପଟେଲଙ୍କ ମୁଖରୁ ଗୁରୁଗମ୍ଭୀର ଘୋଷଣା ସମସ୍ତଙ୍କୁ ଚକିତ କରିଦେଇଥିଲା । ଜଣକ ପରେ ଜଣେ ଆଗକୁ ଆସି ଚୁକ୍ତିପତ୍ରରେ ଦସ୍ତଖତ କରିବାରେ ଲାଗିଲେ । ଅବଶ୍ୟ କେତେକ ରାଜା ସମୟ ମାଗି ଅନୁମତିପ୍ରାପ୍ତ ହୋଇଥିଲେ । ଭାରତର ଅଖଣ୍ଡତାର ବିଜୟ କେତନ ଏହିଠାରୁ ଉଡ଼ିବା ଆରମ୍ଭ କଲା । ସର୍ଦ୍ଦାର ପଟେଲ ଏହି ମିଶ୍ରଣ ସମ୍ବନ୍ଧରେ ୧ ୯ ୪ ୯ ମସିହା ଅଗଷ୍ଟ ୧ ତାରିଖ ଦିନ ମିଶ୍ରଣ ନୋଟିଫିକେସନ୍ ଜାରି କରି କହିଥିଲେ– "Centuries ago, it was the proud privilege of Kalinga to arouse awakening in a great monarch who became in the

course of time not only a great and wise sovereign and suzerain, but also a great guide, friend and philosopher of his people. Few had dreamt and non had imagined that it would be from the land that world start a revolutionary change which could achieve for India the same measure of unity and strength and security which India has attained under that distinguished Ruler Ashoke. I am happy that I helped him (Mahatab) to realise what was not only his dream and his ambition, but also the dream and ambition of all Oriyas. I am happier still that it was that backward province, as they call it, which led the way for the rest of India to follow." ଭାରତରେ ଅଗ୍ରଣୀ ହେବାର ମାନ୍ୟତା ଓଡ଼ିଶା ପାଇଥିଲା ଏହି ମିଶ୍ରଣ ଚୁକ୍ତି ସମ୍ପାଦନ ମାଧ୍ୟମରେ । ଅନ୍ୟସବୁ ଗଡଜାତ ଡକ୍ଟର ମହତାବଙ୍କ ଦର୍ଶନର ଓ ଆଦର୍ଶର ଅନୁସରଣ କରି ମିଶ୍ରଣ ଚୁକ୍ତି ଦସ୍ତଖତ କରିଥିଲେ । ହାଇଦରାବାଦରେ ପୋଲିସ୍ ଆକ୍ସନ ଦ୍ୱାରା ଚୁକ୍ତି ସଂପାଦିତ ହୋଇଥିଲା, ନୀଳଗିରି ଦଖଲ ପରି । ମାତ୍ର ଜାମ୍ମୁ ଓ କାଶ୍ମୀରରେ ମହତାବଙ୍କ ଦର୍ଶନ ଦ୍ୱାରା ପରିଚାଳିତ ନହୋଇ ନୀଳଗିରି ରାସ୍ତାରେ ନଯାଇ ଜାତିସଂଘର ଦ୍ୱାରସ୍ଥ ହେବାରୁ ଭାରତ ଆଜି ପର୍ଯ୍ୟନ୍ତ ରକ୍ତରେ ସ୍ନାନ କରୁଛି, ମିଶ୍ରଣ ସଂପୂର୍ଣ୍ଣ ହୋଇନାହିଁ ।

**(୩) ମିଳିତ ମନ୍ତ୍ରିମଣ୍ଡଳର ଅପରିହାର୍ଯ୍ୟତା :** ବହୁଦଳୀୟ ସଂସଦୀୟ ଗଣତନ୍ତ୍ରର ସଫଳତା ପାଇଁ ମିଳିତ ମନ୍ତ୍ରିମଣ୍ଡଳ ବ୍ୟବସ୍ଥା ଅପରିହାର୍ଯ୍ୟ । ୧୯୫୯ର କଂଗ୍ରେସ ଗଣତନ୍ତ୍ର ପରିଷଦ ମିଳିତ ମନ୍ତ୍ରିମଣ୍ଡଳ ଥିଲା ପ୍ରଥମ ପରୀକ୍ଷା । ସଂଖ୍ୟାଗରିଷ୍ଠ ଦଳ ଭିତରେ ଅନ୍ତର୍ବିବାଦର ଔଷଧ ମଧ୍ୟ ସେହି ମିଳିତ ମନ୍ତ୍ରିମଣ୍ଡଳ ବ୍ୟବସ୍ଥା । ଝୁଲା ବିଧାନସଭାର ଔଷଧ ମଧ୍ୟ ସେହି ମିଳିତ ମନ୍ତ୍ରିମଣ୍ଡଳ ବ୍ୟବସ୍ଥା । ଜନ କଂଗ୍ରେସ-ସ୍ୱତନ୍ତ୍ର ମିଳିତ ମନ୍ତ୍ରିମଣ୍ଡଳ ସରକାର ୧୯୬୭, ଉତ୍କଳ କଂଗ୍ରେସ ସ୍ୱତନ୍ତ୍ର ଝାଡ଼ଖଣ୍ଡ ମିଳିତ ମନ୍ତ୍ରିମଣ୍ଡଳ ୧୯୭୧ ମଧ୍ୟ ଝୁଲା ବିଧାନସଭାର ପରିଣାମ ହୋଇଥିଲା । ଏହିପରି ଓଡ଼ିଶାର ପରୀକ୍ଷିତ ଔଷଧ ଅନ୍ୟ ରାଜ୍ୟମାନଙ୍କରେ ପ୍ରୟୋଗ ହେବାରେ ଲାଗିଲା । ବର୍ତ୍ତମାନ ଜାତୀୟ ସ୍ତରରେ ସେହି ମିଳିତ ମନ୍ତ୍ରିମଣ୍ଡଳ ବଟିକା ଜନପ୍ରିୟ ହୋଇପାରିଛି । ଡକ୍ଟର ମହତାବଙ୍କର ପରୀକ୍ଷାଳୟରୁ ନିର୍ଗତ ଏହି ବଟିକା ସର୍ବତ୍ର ବ୍ୟବହୃତ ହେଉଛି ।

**(୪) ପଞ୍ଚାୟତିରାଜ ପ୍ରତିଷ୍ଠା :** ରାଷ୍ଟ୍ରପୁଞ୍ଜି ଦ୍ୱାରା ଓଡ଼ିଶାକୁ ଏକ ସମୃଦ୍ଧ ରାଜ୍ୟ କରି ଗଢ଼ିବା ଥିଲା ତାଙ୍କର ଅର୍ଥନୈତିକ ଦର୍ଶନ । ସେହି ପରିପ୍ରେକ୍ଷୀରେ ପଞ୍ଚବାର୍ଷିକ

ଯୋଜନାର ସଫଳ ରୂପାୟନ ପାଇଁ ପଞ୍ଚାୟତିରାଜର ପ୍ରୟୋଗ ଓଡ଼ିଶାରେ ୧୯୫୯ ମସିହାରେ କରାଯାଇଥିଲା । ମିଳିତ ମନ୍ତ୍ରିମଣ୍ଡଳ ବ୍ୟବସ୍ଥା ଚାଲୁ ରହିଥିଲେ ମଧ ଓଡ଼ିଶାରେ ପଞ୍ଚାୟତିରାଜ ପ୍ରବର୍ତ୍ତନ କରିବା ପାଇଁ ଡକ୍ଟର ମହତାବ ଅଗ୍ରଣୀ ହୋଇଥିଲେ । ପଞ୍ଚାୟତିରାଜ ଆଇନ୍ କେନ୍ଦ୍ର ସରକାରଙ୍କର ପ୍ରରୋଚନାରେ ପଞ୍ଚବାର୍ଷିକ ଯୋଜନାକୁ ଲୋକପ୍ରତିନିଧିମାନଙ୍କ ମାଧ୍ୟମରେ ସଫଳ କରିବାକୁ ପ୍ରଣୀତ ହୋଇଥିଲା । ଏହାକୁ କିପରି କାର୍ଯ୍ୟକାରୀ କଲେ ଗଣତନ୍ତ୍ରର ମୂଳଭିତ୍ତି ସୁଦୃଢ଼ ହେବ ସେ ବିଷୟରେ ଆଲୋଚନା ପାଇଁ ରାଜଭବନରେ ତତ୍କାଳୀନ ରାଜ୍ୟପାଳ ୱାଇ.ଏନ୍. ସୁଖନ୍ତଙ୍କର ଅଧ୍ୟକ୍ଷତାରେ ଏକ ଆଲୋଚନା ସଭା ଡକାଯାଇଥିଲା । ଏହା ଇଣ୍ଡିଆନ୍ ଇନ୍ଷ୍ଟିଚ୍ୟୁଟ୍ ଅଫ୍ ପବ୍ଲିକ୍ ଆଡ୍ମିନିଷ୍ଟ୍ରେସନ୍, ଓଡ଼ିଶା ଶାଖା ତରଫରୁ ଆହୂତ ହୋଇଥିଲା । ରାଜ୍ୟପାଳ ଏହି ଶାଖାର ସଭାପତି ଥିଲେ । ସରକାରଙ୍କ ତରଫରୁ ମୁଖ୍ୟମନ୍ତ୍ରୀ ଡକ୍ଟର ମହତାବ ଓ ଅର୍ଥମନ୍ତ୍ରୀ ଶ୍ରୀ ରାଜେନ୍ଦ୍ରନାରାୟଣ ସିଂହଦେଓ ଆଲୋଚନାରେର ଅଂଶ ଗ୍ରହଣ କରୁଥିଲେ । ଲେଖକ ଜଣେ 'ସ୍ଥାନୀୟ ଶାସନ' ପଢ଼ାଉଥିବା ଅଧ୍ୟାପକ ହିସାବରେ ନିଜର ବୈଷୟିକ ଗବେଷଣା ଜନିତ ମତାମତ ଉପସ୍ଥାପନ କରିବାକୁ ରାଜ୍ୟପାଳଙ୍କ ଆହ୍ୱାନ ଯୋଗୁ ଉକ୍ତ ସଭାରେ ମତାମତ ଉପସ୍ଥାପନ କରିବାକୁ ସୁଯୋଗ ପାଇଥିଲା । ପ୍ରାଥମିକ ଶିକ୍ଷା, ସ୍ୱାସ୍ଥ୍ୟସେବାର ନିୟନ୍ତ୍ରଣ ଏବଂ ଫ୍ରେଞ୍ଚ୍ ଆରୋଣ୍ଡାଇଜ୍ମେଣ୍ଟ୍ର ନିୟନ୍ତ୍ରଣ ବ୍ୟବସ୍ଥାକୁ ପ୍ରବର୍ତ୍ତନ କରିବା ପାଇଁ ଲେଖକର ମତକୁ ଡକ୍ଟର ମହତାବ ପ୍ରଥମେ ଗ୍ରହଣ କରି ଏହାକୁ କାର୍ଯ୍ୟକାରୀ କରିବା ପାଇଁ ଘୋଷଣା କରିଥିଲେ । ରାଜ୍ୟପାଳ ତାଙ୍କ ସଭାପତି ଅଭିଭାଷଣରେ ଡକ୍ଟର ମହତାବଙ୍କ ଗବେଷକମାନଙ୍କ ମତ ପ୍ରତି ସହମତ ହୋଇଥିବାରୁ ମୁଖ୍ୟମନ୍ତ୍ରୀଙ୍କୁ ଧନ୍ୟବାଦ ଦେଇଥିଲେ । ସଭା ପରେ ଡକ୍ଟର ମହତାବ ଆମମାନଙ୍କ ସହିତ ଅନେକ ସମୟ ପର୍ଯ୍ୟନ୍ତ ଏହି ବିଷୟରେ ଆଗ୍ରହର ସହିତ ଆଲୋଚନା କରିଥିଲେ । କି ଆଗ୍ରହ ଓ ନୂତନ ଚିନ୍ତା ପ୍ରତି କି ଆଦର ଦେଖିବାର କଥା !

**(୫) ରାଜନୈତିକ ଭାବସଂଚାରଣ (Political Communication) :** ଗଣତନ୍ତ୍ର ଏକ ରାଜନୈତିକ ଜୀବନ ଯାତ୍ରାର ପଥ । ରାଜନୈତିକ ଜୀବନ ଯାପନ ପ୍ରଣାଳୀ । ମୂଲ୍ୟବୋଧ ଭିତ୍ତିକ ରାଜନୈତିକ ଜୀବନ ପ୍ରଣାଳୀ । ଏହି ମୂଲ୍ୟବୋଧକୁ ଜୀବନରେ ପ୍ରତ୍ୟେକ କାର୍ଯ୍ୟରେ ପ୍ରତିଫଳିତ କରିବାର ଶିକ୍ଷା ଓ ଅଭ୍ୟାସ ଦ୍ୱାରା ମଜ୍ଜାଗତ କରାଇ ସାମାଜିକକରଣ ଚରିତ୍ର ହାସଲ କରାଯାଏ । ଏହି ପ୍ରକ୍ରିୟାକୁ ରାଜନୈତିକ ସାମାଜିକକରଣ କୁହାଯାଏ । (Political Sociallisation) ରାଜନୈତିକ ମୂଲ୍ୟବୋଧ, ଆଦର୍ଶ, ବିଶ୍ୱାସ, ଆସ୍ଥା, ଅନୁଷ୍ଠାନ ପ୍ରତି ଆନୁଗତ୍ୟ ଆଦିକୁ ବ୍ୟକ୍ତିର ଜୀବନରେ ଅନ୍ତଃକରଣ କରିଯିବା ପ୍ରକ୍ରିୟାକୁ ରାଜନୈତିକ ସାମାଜିକକରଣ କୁହାଯାଏ । ଏହି ଅନ୍ତଃକରଣ

ହୋଇଥିବା ମୂଲ୍ୟବୋଧକୁ ଗଣଚେତନାରେ ପରିଣତ କରିବା ପ୍ରଚେଷ୍ଟାକୁ ରାଜନୈତିକ ଭାବସଂଚାରଣ କୁହାଯାଏ । ଡକ୍ଟର ମହତାବଙ୍କ ପରି ରାଜନୈତିକ ସଂଚାରକ ମିଳିବା ଦୁର୍ଲଭ । ଯେ କୌଣସି ତାତ୍ତ୍ୱିକ ବା ବ୍ୟବହାରିକ ବିଷୟ ହେଉ ତାହା ସରଳ ଭାଷାରେ ବୁଝାଇବା ଦକ୍ଷତା ଏବଂ ଶ୍ରୋତାଙ୍କୁ ମୁଗ୍ଧ କରିବା କ୍ଷମତା ଡକ୍ଟର ମହତାବଙ୍କର ଏକ ମହନୀୟ ଗୁଣ । ଲେଖାରେ, ବକ୍ତୃତାରେ, ଆଲୋଚନାଚକ୍ରରେ, ବୈଜ୍ଞାନିକଙ୍କ ମେଳରେ, ବିଶେଷଜ୍ଞଙ୍କ ମଧ୍ୟରେ ଡକ୍ଟର ମହତାବ ନିଜର ଚିନ୍ତା ଅତି ପ୍ରାଞ୍ଜଳ ଭାବରେ ଉପସ୍ଥାପିତ କରିପାରୁଥିଲେ । କୌଣସି ନୋଟ୍ ବା କାଗଜ ହାତରେ ଧରି କହିବା କେହି ଦେଖି ନାହାନ୍ତି । ପ୍ରଚଣ୍ଡ ସ୍ମରଣ ଶକ୍ତି । ତର୍କଶକ୍ତି ଓ ଧୀ ଶକ୍ତିର ଅଧିକାରୀ ହୋଇ ସେ ସମସ୍ତଙ୍କୁ ମୁଗ୍ଧ କରିପାରୁଥିଲେ । ତାଙ୍କର ରାଜନୈତିକ ଜୀବନ ଦର୍ଶନର ପ୍ରଧାନ ଉପାଦାନ ହେଲା ରାଜନୈତିକ ଭାବସଂଚାର । ଏହି ଶକ୍ତି ତାଙ୍କୁ ସବୁ ଶ୍ରେଣୀର ଲୋକଙ୍କ ନିକଟରେ ଆଦୃତ ହୋଇ ପୂଜ୍ୟାସ୍ପଦ କରିପାରିଛି । ତାଙ୍କର ଭାଷା ଉପରେ ଦଖଲର ଗଭୀରତା ମାପିବା କଠିନ । ସାହିତ୍ୟ ସଂସ୍କୃତି ଓ ବିଜ୍ଞାନ ସବୁ କ୍ଷେତ୍ରରେ ସେ ଭାବସଂଚାରର ଦକ୍ଷତା ପ୍ରତିପାଦିତ କରି ଅଗ୍ରଗଣ୍ୟ ଜନନାୟକ ହୋଇପାରିଛନ୍ତି । ରାଜନୈତିକ ସଂଚାରକ Political communicator ହିସାବରେ ସେ ଅଦ୍ୱିତୀୟ । ଭାଷାରେ ବିଚକ୍ଷଣତା, କୌଶଳରେ ନିଗୂଢ଼ତା, ତର୍କରେ ଅଜେୟତା ଏବଂ ଶାସନରେ ଜନପ୍ରିୟତା ତାଙ୍କୁ ସ୍ଥିତିବାଦୀ ଜନନାୟକ ରୂପେ ଏକ ଦୁର୍ଜ୍ଜୟ ଅନୁଷ୍ଠାନ କରିପାରିଛି ।

(୬) **ରାଜନୈତିକ ଜ୍ଞାନମଣ୍ଡଳ:** ତାଙ୍କ ପରି ଜନନାୟକ ବିରଳ । ବଡ ବଡ ନେତାମାନେ ନିଜ ଜୀବନୀ ଲେଖି ବା ରାଜନୈତିକ ଚିନ୍ତା ପ୍ରଚାର ପାଇଁ ପ୍ରବନ୍ଧ ଲେଖି ଲେଖକ ହୋଇଛନ୍ତି । ଡକ୍ଟର ମହତାବ ଏକ 'ଜ୍ଞାନମଣ୍ଡଳ' ରୂପେ ଦେଦୀପ୍ୟମାନ । ବହୁ କବିତା ଲେଖି ସେ କବି, ବହୁ ପ୍ରବନ୍ଧ ଲେଖି ସେ (ଗାଁ ମଜଲିସ୍ ପାଇଁ) ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ସାହିତ୍ୟିକ, ବହୁ ଉପନ୍ୟାସ, ନାଟକ, ଇତିହାସ, ସମାଲୋଚନା ସାହିତ୍ୟ, ରାଜନୈତିକ ବିଚାର ଗ୍ରନ୍ଥ, ସାଙ୍ଗଠନିକ, ପ୍ରଶାସନିକ, ସାମ୍ବାଦିକ, ଗବେଷକ୍ ଓ ପିଏଚଡ଼ି ଛାତ୍ରଙ୍କର 'ଗାଇଡ୍', ପରୀକ୍ଷକ, ନୃତ୍ୟ ଗୀତର ପୃଷ୍ଠପୋଷକ ଓ ଗବେଷକ, କଳା, ସଂସ୍କୃତି ଅନୁଷ୍ଠାନର ପ୍ରତିଷ୍ଠାତା ରୂପେ ସେ ତାଙ୍କ ରାଜନୈତିକ ଦର୍ଶନର ସାରସ୍ୱତ ପ୍ରୟୋଗାତ୍ମକ ଅଂଶକୁ ଦୀପ୍ତିଶୀଳ କରିଯାଇଛନ୍ତି । ତାଙ୍କର 'ବହୁ ଜ୍ଞାନନିପୁଣତା' ଅନ୍ୟ କୌଣସି ରାଜନୈତିକ ନେତାଙ୍କ ନିକଟରେ ଦେଖିବାକୁ ମିଳେ ନାହିଁ । ସେ ଅଜେୟ ଓ ଅମର । ଓଡ଼ିଶା ତଥା ଭାରତର ସଂପଦ । ଜୟ ଜଗନ୍ନାଥ ।

*ପଲିସିସାଇଣ୍ଟିଷ୍ଟ, ପ୍ରଫେସରପଡା, କଟକ-୩*



# ସମାଜ ଜୀବନର ଅପୂର୍ବ ଚିତ୍ରକର : ଡକ୍ଟର ମହତାବ

ବିଭୂତି ପଟ୍ଟନାୟକ

"କବିତା,ନାଟକ ଠାରୁ ଆରମ୍ଭ କରି ଉପନ୍ୟାସ, ରମ୍ୟ ରଚନା ଓ ସଂପାଦକୀୟନିବନ୍ଧ ପର୍ଯ୍ୟନ୍ତ, ବହୁ କ୍ଷେତ୍ରରେ ଲେଖନୀ ଚାଳନା କରିଛନ୍ତି । ଭଦ୍ରକ ଅନ୍ତର୍ଗତ ଆଗରପଡ଼ା ଜମିଦାର ବଂଶରେ ସେ ଜନ୍ମ ଗ୍ରହଣ କରିଥିଲେ । ସାମନ୍ତବାଦୀ ପରିବେଶ ମଧ୍ୟରେ ବଢି ସୁଦ୍ଧା, ସେ ଜାତୀୟତାବାଦୀ ମୁକ୍ତି ଅନ୍ଦୋଳନରେ ଯୋଗଦେଇ ଓଡ଼ିଶାରେ ଏହାର ନେତୃତ୍ୱ ନେଇଥିଲେ । ତେଣୁ ସ୍ୱାଭାବିକ ଭାବରେ ତାଙ୍କ ଉପନ୍ୟାସମାନଙ୍କରେ ଜାତୀୟତାବାଦୀ ଆନ୍ଦୋଳନର ଚିତ୍ର ପ୍ରତିଫଳିତ ହୋଇପାରିଛି । "

ଡକ୍ଟର ହରେକୃଷ୍ଣ ମହତାବଙ୍କ ସାହିତ୍ୟ କୃତି ଏବଂ ଉପନ୍ୟାସ କୀର୍ତ୍ତୀ ସଂପର୍କରେ ସାହିତ୍ୟିକ ସୁରେନ୍ଦ୍ର ମହାନ୍ତିଙ୍କ ଉପର ଲିଖିତ ମନ୍ତବ୍ୟ ଏକ ଯଥାର୍ଥ ଆକଳନ ବୋଲି କୁହାଯାଇପାରେ । ସାହିତ୍ୟର ବିଭିନ୍ନ ବିଭାଗରେ ସେ ଲେଖନୀ ଚାଳନା କରିଥିଲେ । ତାଙ୍କର 'ପଲାସୀ ଅବସାନେ' କାବ୍ୟ ବ୍ରିଟିଶ୍ ସରକାରଙ୍କ ବିଷ ଦୃଷ୍ଟିରେ ପଡ଼ିଥିଲା । ସେ ତାଙ୍କ ଚତୁଃପାର୍ଶ୍ୱରେ ଥିବା ସମାଜ, ସମାଜିକ ମଣିଷକୁ ଯେପରି ଭାବରେ ଦେଖୁଥିଲେ, ତା'ର ଅବିକଳ ଚିତ୍ର କେବଳ ଉପନ୍ୟାସରେ ଅଙ୍କନ କରିବା ତାଙ୍କ ଲକ୍ଷ୍ୟ ନଥିଲା । ପରିବର୍ତ୍ତିତ ପରିସ୍ଥିତିରେ ସମାଜ ଓ ସାମାଜିକ ମଣିଷର ଜୀବନ-ଚର୍ଯ୍ୟାରେ ଯେଉଁ ସବୁ ପରିବର୍ତ୍ତନ ଘଟିବା କଥା, ତାହାର ଅନ୍ତରଙ୍ଗ ଆଲେଖ୍ୟ ମଧ ତାଙ୍କ ଉପନ୍ୟାସରେ ଚିତ୍ରାୟିତ ହୋଇଥିଲା । ଫଳତଃ ଡକ୍ଟର ମହତାବଙ୍କ ନିଜ ରାଜନୈତିକ ଦୃଷ୍ଟି ଓ ଦର୍ଶନ ତାଙ୍କ ଉପନ୍ୟାସ ଚରିତ୍ରମାନଙ୍କ ମଧ୍ୟରେ ପ୍ରତିବିମ୍ବିତ ହୋଇଥିଲା । ତେଣୁ ପାଠକମାନଙ୍କୁ ଏକ ରସଘନ କାହାଣୀ କହି ସେମାନଙ୍କର ମନୋରଂଜନ କରିବା ଲକ୍ଷ୍ୟରେ ସେ ଉପନ୍ୟାସ

ଲେଖି ନଥିଲେ, ଉପନ୍ୟାସ କହାଣୀ ମାଧ୍ୟମରେ ନିଜ ରାଜନୈତିକ ଚିନ୍ତାଧାରାକୁ ପାଠକମାନଙ୍କ ସମ୍ମୁଖରେ ଠେଲି ଧରିବା ପାଇଁ ସେ ଉପନ୍ୟାସ ଲେଖିଥିଲେ । ସେଥିପାଇଁ ସୁରେନ୍ଦ୍ର ମହାନ୍ତିଙ୍କ ଠାରୁ ଆରମ୍ଭ କରି ମାୟାଧର ମାନସିଂହଙ୍କ ପର୍ଯ୍ୟନ୍ତ ଅନେକ ସମାଲୋଚକ ତାଙ୍କ ଉପନ୍ୟାସ ଗୁଡ଼ିକୁ ପ୍ରଚାରଧର୍ମୀ ବୋଲି ସମାଲୋଚନା କରିଛନ୍ତି । ସ୍ଥଳ ବିଶେଷରେ ନିଜର ରାଜନୈତିକ ଆଦର୍ଶ ପ୍ରଚାର ପାଇଁ ଡକ୍ଟର ମହତାବଙ୍କ ଉପନ୍ୟାସ ପ୍ରବନ୍ଧଧର୍ମୀ ହୋଇଉଠିଛି ବୋଲି ମଧ୍ୟ ଅଭିଯୋଗ ହୋଇଛି । ଏ ସବୁ ଅଭିଯୋଗ କିଛି ପରିମାଣରେ ସତ୍ୟ ହୋଇପାରେ କିନ୍ତୁ ପରିପୂର୍ଣ୍ଣ ସତ୍ୟ ନୁହେଁ ।

ସ୍ରଷ୍ଟା ଠାରୁ ସୃଷ୍ଟିକୁ ଅଲଗା କରି ବିଚାର କରାଯାଏ ନାହିଁ । ସ୍ରଷ୍ଟା ସୃଷ୍ଟି ମାଧ୍ୟମରେ ନିଜକୁ ପ୍ରକାଶ କରେ । ଡକ୍ଟର ମହତାବ ଗାନ୍ଧୀଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସ୍ୱାଧୀନତା ଆନ୍ଦୋଳନରେ ଝାସ ଦେଇଥିବା ଜଣେ ବିଶିଷ୍ଟ ବ୍ୟକ୍ତିତ୍ୱ । ତାଙ୍କ ଜୀବନକୁ ମହାତ୍ମା ଗାନ୍ଧିଜୀଙ୍କ ଆଦର୍ଶ ଯେପରି ପ୍ରଭାବିତ କରିଛି, ତାଙ୍କ ଉପନ୍ୟାସର ଚରିତ୍ରଗୁଡ଼ିକ ମଧ୍ୟ ସେହିପରି ତାଙ୍କର ନିଜ ଜୀବନାଦର୍ଶ ଦ୍ୱାରା ପ୍ରଭାବିତ ହୋଇଛି । ତାଙ୍କର ସ୍ୱାଧୀନତା ପୂର୍ବବର୍ତ୍ତୀ ଉପନ୍ୟାସ ଚତୁଷ୍ଟୟ ଆଲୋଚନା କଲେ ଏହି ସତ୍ୟ ସ୍ୱତଃ ପ୍ରକଟିତ ହୋଇଉଠେ ।

ଡକ୍ଟର ମହତାବଙ୍କ 'ନୂତନ ଧର୍ମ' (୧୯୩୫), 'ପ୍ରତିଭା'(୧୯୪୬) ଏବଂ 'ଅବ୍ୟାପାର'୧୯୪୭ ମସିହାରେ ପ୍ରକାଶିତ ହୋଇଥିଲା । 'ଟାଉଟର' ୧୯୫୦ ମସିହାରେ ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିଲେ ମଧ୍ୟ ସ୍ୱାଧୀନତା ପୂର୍ବରୁ ସେ କାରାରୁଦ୍ଧ ଥିଲାବେଳେ ରଚନା କରିଥିଲେ । ଏହି ଚାରୋଟି ଉପନ୍ୟାସ ଉଣା ଅଧିକେ ତାଙ୍କ ବନ୍ଦୀ ଜୀବନର ସାରସ୍ୱତ ଶସ୍ୟ ।

'ନୂତନ ଧର୍ମ' ଉପନ୍ୟାସଟି ପ୍ରଥମେ 'ଆନନ୍ଦ ଲହରୀ', ଉପନ୍ୟାସମାଳାରେ ପ୍ରକାଶିତ ହୋଇଥିଲା । ଉପନ୍ୟାସ ସାହିତ୍ୟର ପ୍ରଚାର ଓ ପ୍ରସାର ପାଇଁ ସ୍ୱଳ୍ପ ମୂଲ୍ୟରେ ଉଚ୍ଚମାନର ଉପନ୍ୟାସ ପାଠକମାନଙ୍କ ପାଖରେ ପହଞ୍ଚାଇ ଦେବା ଲକ୍ଷ୍ୟରେ ସ୍ୱର୍ଗତ ବାଳକୃଷ୍ଣ କର ଏହି 'ଆନନ୍ଦ ଲହରୀ' ଉପନ୍ୟାସମାଳା ପ୍ରକାଶ କରୁଥିଲେ । କାଳିନ୍ଦୀ ଚରଣଙ୍କ 'ମାଟିର ମଣିଷ' ଭଳି ହରେକୃଷ୍ଣ ମହତାବଙ୍କ 'ନୂତନ ଧର୍ମ' ଏହି ଉପନ୍ୟାସ ସିରିଜରେ ପ୍ରକାଶିତ ହୋଇଥିଲା । ସୁରେନ୍ଦ୍ର ମହାନ୍ତିଙ୍କ ଭାଷାରେ " ଗାନ୍ଧିଜୀଙ୍କ ବାର୍ତ୍ତା ଓଡ଼ିଶାରେ ନୂଆ ନୂଆ ପ୍ରଚାରିତ ହେଉଥିବା ବେଳେ କଂଗ୍ରେସ ଅନୁଷ୍ଠାନକୁ ଓଡ଼ିଶାର ଅଭିଜାତ ଗୋଷ୍ଠୀ କିପରି ଘୃଣା ଚକ୍ଷୁରେ ଦେଖୁଥିଲେ, 'ନୂତନ ଧର୍ମ'ରେ ଦେଖିବାକୁ ମିଳେ ତାର ପ୍ରତିଛବି । ଗୌଡ଼ୀୟ ବୈଷ୍ଣବ ଧର୍ମର ମହନ୍ତ ଓ ବାବାମାନଙ୍କ ଉପରେ ମହତାବଙ୍କ

ସଂସ୍କାରବାଦୀ ଆକ୍ରମଣର କିଛିଟା ଛିଟା ମଧ୍ୟ ଛିଟିକି ପଡ଼ିଛି ।''

ବାସ୍ତବରେ ଗୌଡ଼ୀୟ ଧର୍ମାବଲମ୍ବୀ ବାବାଜୀମାନଙ୍କ ବ୍ୟଭିଚାରର ନଗ୍ନଚିତ୍ର ଅଙ୍କନ କରି ଡ଼କ୍ଟର ମହତାବ ସେମାନଙ୍କ ପ୍ରେମଧର୍ମର ଅସଲି ସ୍ୱରୂପ ଉଦ୍‌ଘାଟନ କରିଛନ୍ତି ଏହି 'ନୂତନ ଧର୍ମ' ଉପନ୍ୟାସରେ । ବିଧବା ସୁନୀତିକୁ ବିରାଡି-ବୈଷ୍ଣବଙ୍କ ଯୌନ ଲାଳସାର ଶିକାର କରିବା ପ୍ରେମ ନୁହେଁ କି ଧର୍ମ ନୁହେଁ । ଏହା ଧର୍ମ ନାମରେ ବ୍ୟଭିଚାର । ପ୍ରକୃତ ଧର୍ମ ହେଉଛି ସେବାଧର୍ମ । ପ୍ରକୃତ ପ୍ରେମ ହେଉଛି ଦେଶପ୍ରେମ । ଡକ୍ଟର ମହତାବ ଏହି ଧର୍ମ ଓ ପ୍ରେମତତ୍ତ୍ୱକୁ 'ନୂତନ ଧର୍ମ' ଉପନ୍ୟାସରେ କଳାତ୍ମକ ଭାବରେ ଉପସ୍ଥାପିତ କରିଛନ୍ତି ।

ତାଙ୍କର ଦ୍ୱିତୀୟ ସର୍ବାଧିକ ଲୋକପ୍ରିୟ ଉପନ୍ୟାସ ହେଉଛି 'ପ୍ରତିଭା' । ଏଥିରେ ଚିତ୍ରିତ ହୋଇଛି ଓଡିଶାର ସାମାଜିକ ଓ ରାଜନୈତିକ ଜାଗରଣର ବାସ୍ତବ ଚିତ୍ର । ଅଙ୍କିତ ହୋଇଛି ମଧ୍ୟ ଏହି ଉପନ୍ୟାସରେ 'ଅପୁଛି' ନାମ୍ନୀ ଏକ ଗ୍ରାମ୍ୟ ବାଳିକାର 'ପ୍ରତିଭା'ରେ ରୂପାନ୍ତରିତ ହେବାର ପାହାଣୀ ମଧ୍ୟରେ ଡକ୍ଟର ମହତାବ ଓଡ଼ିଶାରେ ନାରୀ ଶିକ୍ଷାର ପ୍ରସାର ଓ ତା'ର ସୁଦୂରପ୍ରସାରୀ ପରିଣତି ସଂପର୍କରେ ସୂଚନା ଦେଇଛନ୍ତି ।

'' ଆଦର୍ଶ ପାଳନର ସଂକଳ୍ପ ଓ ପରିସ୍ଥିତିର ବାସ୍ତବତା ପୁଣି ହୃଦୟର ଆବେଗ ମଧ୍ୟରେ ସଂଘର୍ଷ ଏବଂ ଅବଶେଷରେ ଆଦର୍ଶବାଦୀ ସଂକଳ୍ପର ବିଜୟ, ଯାହା 'ପ୍ରତିଭା'ରେ ପ୍ରତିଫଳିତ ହୋଇଛି, ମହତାବଙ୍କର ଅନ୍ୟ ଉପନ୍ୟାସମାନଙ୍କରେ ମଧ୍ୟ ଊଣା-ଅଧିକେ ଚିତ୍ତ-ସଂଘର୍ଷ ଓ ଦ୍ୱନ୍ଦ୍ୱ ହିଁ ପ୍ରକାଶ ପାଇଛି'' - ସୁରେନ୍ଦ୍ର ମହାନ୍ତିଙ୍କ ଏହି ମନ୍ତବ୍ୟର ଯାଥାର୍ଥ୍ୟ ସଂପର୍କରେ ସଂଦେହ ନାହିଁ ।

'ଟାଉଟର ଉପନ୍ୟାସରେ ଚାଟଶାଳୀ ଶିକ୍ଷକ ରାମଚନ୍ଦ୍ର ମହାପାତ୍ରଙ୍କ କର୍ତ୍ତବ୍ୟନିଷ୍ଠା, ଛାତ୍ରବତ୍ସଳତା, ଉତ୍ସର୍ଗୀକୃତ ସେବା ମନୋଭାବ ସତ୍ତ୍ୱେ ମାଟ୍ରିକ୍-ପାସ ଜଣେ ଟାଉଟରର ଚାପ ଫଳରେ ତାଙ୍କୁ ଗ୍ରାମ ଛାଡ଼ିବାକୁ ହୋଇଥିଲା । ଏ ସଂପର୍କରେ ମହତାବଙ୍କ ମନ୍ତବ୍ୟ ଥିଲା - ''ଗାଁର ଟାଉଟରୀ ଏକ ମହା ସମସ୍ୟା । ଲୋକ ଚରିତ୍ରର ପରିବର୍ତ୍ତନ ନ ହେଲେ, ଗାଁରେ ଦେଶର ବୋଧ ଜାଗରିତ ନ ହେଲେ ଗାଁରୁ ଟାଉଟରୀ ଦୂର କରିବା ସହଜସାଧ୍ୟ ନୁହେଁ ।'' ଲୋକମାନଙ୍କ ଚରିତ୍ରରେ ପରିବର୍ତ୍ତନ ଆଣିବା ପାଇଁ ଶିକ୍ଷକ୍ ରାମପ୍ରସାଦ ଗାଁରେ ଦେଶାତ୍ମବୋଧ ଜାଗ୍ରତ କରି ପାରିଥିବା ହେତୁ ତାଙ୍କର ଶ୍ରମ ଓ ସାଧନା ସଫଳ ହୋଇଛି ବୋଲି ସେ ଆତ୍ମ-ସନ୍ତୋଷ ଲାଭ କରିଥିଲେ ।

ନୂତନ ଧର୍ମ, ପ୍ରତିଭା, ଟାଉଟର ଓ ଅବ୍ୟାପାର ପ୍ରଭୃତି ସଂସ୍କାରଧର୍ମୀ ଉପନ୍ୟାସରେ ସେ ଯେଉଁ ନୂତନ ସମାଜର ସ୍ୱପ୍ନ ଦେଖିଥିଲେ, ସ୍ୱାଧୀନତା ପରେ ଡକ୍ଟର ମହତାବଙ୍କର

ସେ ସ୍ୱପ୍ନଭଙ୍ଗ ଘଟିଥିଲା । ସେ ନିଜେ ଥିଲେ ସ୍ୱାଧୀନତା ପରବର୍ତ୍ତୀ କାଳରେ ନୂତନ ଯୁଗର ନିର୍ମାତା, ଓଡ଼ିଶାର ମୁଖ୍ୟମନ୍ତ୍ରୀ, କେନ୍ଦ୍ରମନ୍ତ୍ରୀ ଭାବରେ ସେ ଦେଶର ରାଜନୀତିକୁ ନୂଆ ମୋଡ଼ ଦେବାକୁ ଚେଷ୍ଟା କରିଥିଲେ । କିନ୍ତୁ ମହାତ୍ମା ଗାନ୍ଧୀଙ୍କ ଇଚ୍ଛା ବିରୁଦ୍ଧରେ ଦେଶ ବିଭାଜନ ଏବଂ ୧୯୪୮ ମସିହାରୁ ଜାନୁଆରୀ ମାସରେ ଜଣେ ହିନ୍ଦୁ ସାଂପ୍ରଦାୟିକବାଦୀ ବ୍ରାହ୍ମଣ ଯୁବକ ଦ୍ୱାରା ଗାନ୍ଧୀ ହତ୍ୟା ଭାରତୀୟ ରାଜନୀତିରୁ ଗାନ୍ଧୀଜୀଙ୍କ ପ୍ରଭାବକୁ ଗୌଣ କରି ଦେଇଥିଲା ।

ଦେଶ ସେବା ଅପେକ୍ଷା ଆତ୍ମ ସେବା, କ୍ଷମତାକୁ ଯେକୌଣସିମତେ ଅଧିକାର କରିବାର ପ୍ରବଣତା ଯୋଗୁଁ ଜାତୀୟ କଂଗ୍ରେସ ଦଳରେ ବିଭାଜନ ସୃଷ୍ଟି ହେଲା । ଡକ୍ଟର ମହତାବଙ୍କୁ କଂଗ୍ରେସ ଛାଡ଼ିବାକୁ ହେଲା ।

ଦେଶର ଅର୍ଥନୈତିକ ଅଗ୍ରଗତି ଘଟୁଥିଲା ସତ୍ୟ; କିନ୍ତୁ ରାଜନୀତିରୁ ନୈତିକତା ଧୀରେ ଧୀରେ ଲୋପ ପାଇଯାଉଥିଲା । ମହାତ୍ମା ଗାନ୍ଧୀଙ୍କ କଂଗ୍ରେସ ଏବଂ ଇନ୍ଦିରା ଗାନ୍ଧୀଙ୍କ କଂଗ୍ରେସ ମଧ୍ୟରେ ସୃଷ୍ଟି ହୋଇଥିଲା ଆକାଶ ପାତାଳ ପ୍ରଭେଦ । ୧୯୭୫ ମସିହାରେ ଇନ୍ଦିରା ଗାନ୍ଧୀଙ୍କ ଇମରଜେନ୍‌ସି ଘୋଷଣା ଦେଶର ଗଣତନ୍ତ୍ର, ସାମ୍ବିଧାନିକ ସ୍ୱାଧିକାର ଉପରେ କୁଠାରାଘାତ କରିଥିଲା ।

୧୯୪୨ ଅଗଷ୍ଟ ଆନ୍ଦୋଳନ ବେଳେ ଗାନ୍ଧିଜୀଙ୍କ ସହିତ ଡକ୍ଟର ମହତାବ ବ୍ରିଟିଶ ସରକାରଙ୍କ ଦ୍ୱାରା କାରାରୁଦ୍ଧ ହୋଇଥିଲେ । ୧୯୭୫ ମସିହାରେ ଆଉ ଜଣେ ଗାନ୍ଧୀବାଦୀ ଜୟ ପ୍ରକାଶ ନାରାୟଣଙ୍କ ସହ ଜୀବନର ଗୋଧୂଳି ଲଗ୍ନରେ ସେ ଭଞ୍ଜନଗର ଜେଲ୍‌ରେ କାରାରୁଦ୍ଧ ହୋଇଥିଲେ । ସେହି କାରାବାସ କାଳରେ ସେ ରଚନା କରିଥିଲେ ''ତୃତୀୟ ପର୍ବ'' ଉପନ୍ୟାସ ।

ଏହି ଉପନ୍ୟାସରେ ଉତ୍‌କୀର୍ଣ୍ଣ ହୋଇଥିଲା ଡକ୍ଟର ମହତାବଙ୍କ ସ୍ୱପ୍ନ ଭଙ୍ଗର ଦୀର୍ଘଶ୍ୱାସ ।

ସେକ୍ରେଟାରୀଏଟ୍ ହତାରେ ଗାନ୍ଧିଜୀଙ୍କ ପ୍ରତିମୂର୍ତ୍ତି ଆଗରେ ଭାବବିହ୍ୱଳ ଆର୍ତ୍ତ ଅନେକ ଛିଡ଼ା ହୋଇ ଗାନ୍ଧିଜୀଙ୍କ ଆଡ଼କୁ ଚାହୁଁଛନ୍ତି । 'ବାପୁ ! ଏ କ'ଣ ହେଲା ବୋଲି ଦୀର୍ଘ ନିଶ୍ୱାସ ପକାଉଛନ୍ତି' - (ତୃତୀୟ ପର୍ବ ପୃଷ୍ଠା ୧୯୯-୨୦୦) ।

ଏହି ଦୀର୍ଘଶ୍ୱାସ ''ତୃତୀୟ ପର୍ବ'' ଉପନ୍ୟାସର କୌଣସି ଚରିତ୍ରର ନୁହେଁ , ବାସ୍ତବରେ ଏ ଆତ୍ମି ସ୍ୱୟଂ ଡକ୍ଟର ମହତାବଙ୍କର ।

ସେ ଥିଲେ ଜଣେ ଜୀବନ ଶିଳ୍ପୀ; ତାଙ୍କର ଉପନ୍ୟାସ ଗୁଡ଼ିକ ଥିଲା ତାଙ୍କ ଜୀବନାନୁଭୂତିର ଅମଳିନ ଚିତ୍ର ।

*ଲୁଇସରୋଡ଼, ଭୁବନେଶ୍ୱର*



# କେନ୍ଦୁଝର ଓ ପ୍ରତ୍ନପ୍ରିୟ ଡକ୍ଟର ମହତାବ

## ମଦନମୋହନ ମିଶ୍ର

ସୁନ୍ଦର ତଥ୍ୟ, ପୁଷ୍ଟି ଦେଇ ଇତିହାସ ସୃଷ୍ଟିରେ ଯେତେବେଳେ ମିଶିଯାଏ ପ୍ରାଚୀନ କୀର୍ତ୍ତିରାଜିର ସଂରକ୍ଷଣ ଚେତନା..... ତାକୁ କାର୍ଯ୍ୟକାରୀ କରିବାକୁ ନୀରବ ଉନ୍ମାଦନା, ସେତେବେଳେ ସେଇ ଐତିହାସିକ ହୋଇଉଠନ୍ତି ଏକାନ୍ତ ସ୍ମରଣୀୟ........ ବରଣୀୟ ।

ଓଡ଼ିଶାର ସର୍ବତୋ ଭଦ୍ର ଡଃ ହରେକୃଷ୍ଣ ମହତାବ ଥିଲେ ଏପରି ମହନୀୟ କର୍ମ-ଚେତନାର ମହତ୍ତର ମହାସାଧକ । ତାଙ୍କର ଉପରୋକ୍ତ ଇତିହାସ ସମ୍ବନ୍ଧୀ ଗୁଣରାଜି ସାରା ଓଡ଼ିଶାରେ ଯେପରି କେନ୍ଦ୍ରୀଭୂତ ହୋଇଥିଲା କେନ୍ଦୁଝର ବକ୍ଷରେ ।

ମୋଗଲ ସେନା ଓଡ଼ିଶା ଆଡ଼କୁ ମାଡ଼ିଆସିଲା ବେଳକୁ ସେମାନଙ୍କ ପାଖେ ପାଖେ ଆସୁଥିବା ପୂର୍ବ ପୁରୁଷ ରହିଗଲେ କେନ୍ଦୁଝରର ଇତିହାସଧନ୍ୟ ଆଜିର ଆନନ୍ଦପୁର ଚକ୍ରତୀର୍ଥ ବଉଳା ପର୍ବତମାଳା ସେପାରିରେ ଛୋଟ ହେଉ ପଛେ ରାଜକୀୟ ଠାଣିର ଚଳଣି । ତତ୍କାଳୀନ କେନ୍ଦୁଝର ରାଜାଙ୍କ ସହ ମିତ୍ରତା ନେଇ ବସବାସ ଆରମ୍ଭ । ତାପରେ ଅଧିକ ରାଜ୍ୟ... ରାଜତ୍ୱ... ରାଜସ୍ୱ... ରାଜକୀୟତା ପାଇଁ ଉଦ୍ରଖ ଆଗରପଡ଼ାକୁ ଉଠିଗଲେ ମଧ କେନ୍ଦୁଝର ରାଜବଂଶ ସହିତ ମିତ୍ରତାପୂର୍ଣ୍ଣ ସମ୍ପର୍କ ଅତୁଟ ରହିଥିଲା । (କେନ୍ଦୁଝର ରାଜକୀୟ ତାଳପତ୍ର ପୋଥି 'ଗଣସମ୍ମତ' ଅନ୍ତର୍ଗତ ପତ୍ରାଳାପ) । ଆଜି ମଧ ଐତିହାସିକ ବଉଳା ପର୍ବତର କଳିଙ୍ଗ ଘାଟି ଦ୍ୱାର ସେ ପାଖୁ ସେ ଯୁଗର ମହତାବ ବଂଶ ଅବଶେଷ ସାକ୍ଷୀ ସ୍ୱରୂପ ରହିଛି ସେମାନଙ୍କ ସ୍ମୃତି ଚିହ୍ନଧାରୀ ଏକ ମୁକ୍ତ ଅଞ୍ଚଳ ।

ସେଇ ଆଗରପଡ଼ା ରାଜବଂଶର ଉତ୍ତର ପୁରୁଷ- ମହତାବ । ସ୍ୱାଧୀନତା ସଂଗ୍ରାମ ଶେଷରେ କ୍ଳାନ୍ତ ହୋଇପଡ଼ିଲେନି,- ଗ୍ରହଣ କଲେ ଅଭିନବ ଭିନ୍ନ ଅଧ୍ୟବସାୟ- 'ଓଡ଼ିଶାର ପୂର୍ଣ୍ଣାଙ୍ଗ ଇତିହାସ ବିରଚନ' । ସେ ତ ଆଣିଦେଲା ସାଫଲ୍ୟ, ମାତ୍ର ତା ସହିତ ଆସିଲା ଐତିହାସିକ କୀର୍ତ୍ତି ସଂରକ୍ଷଣର ଉଦ୍ଦାମ ମାନସିକତା । ଏଇ ଅବସରରେ ଚିହ୍ନାଇ ଦେବାକୁ ହେବ ଏକ ନୀରବ ମଧୁର ମନୋହର ଶ୍ୟାମଳ ଅଞ୍ଚଳ, ଯେଉଁଠି ମହାପ୍ରକୃତିର ଅଙ୍ଗେ ଅଙ୍ଗେ ଅଳଙ୍କାର

ମଣ୍ଡନ ପରି ଅତ୍ର ତତ୍ର ସର୍ବତ୍ର ରହିଛନ୍ତି ବହୁ ଇତିହାସ ବିନ୍ଦୁ, ତାହା- 'କେନ୍ଦୁଝର' ।

କୁହାଯାଇଛି ଓଡ଼ିଶା ଇତିହାସ ସେ ପର୍ଯ୍ୟନ୍ତ ଅପୂର୍ଣ୍ଣ, ଯେପର୍ଯ୍ୟନ୍ତ କେନ୍ଦୁଝରର ଅତୀତ 'ମର୍ମଛବି ଉଦ୍‌ଘାଟିତ.... ଉଦ୍ଭାସିତ ନ ହୋଇଛି ।

ପୂର୍ବ ପୁରୁଷଙ୍କ ଲୀଳାଭୂମି ଅତି ପାଖର ବଉଳା ପର୍ବତମାଳା ଆଉ ଲୋକଦେବୀ 'ବଉଳାଶୁଣୀ'ଙ୍କ ସ୍ମୃତି ଚେତନାରେ ଉଦ୍‌ବୁଦ୍ଧ ମହତାବଙ୍କର ପରିପକ୍ୱ ଐତିହାସିକ ମାନସରେ.... କେନ୍ଦୁଝର ରାଜବଂଶ ପ୍ରତି ଅନୁରାଗ ଆସକ୍ତି ପ୍ଳାବନରେ ମହତାବ ମନ ବଳାଇ ନାହାନ୍ତି ସାମଗ୍ରିକ ଓଡ଼ିଶାର ଅନ୍ୟ କେଉଁ ଅଞ୍ଚଳ ପ୍ରତି । ଦୃଷ୍ଟିରେଖା ସ୍ଥିର ନିବଦ୍ଧ କରିଛନ୍ତି ଏଇ କେନ୍ଦୁଝର ଉପରେ । ସେଥିରେ ପୁଣି ଅତି ଶ୍ରେଷ୍ଠ.... ଅତି ବିଖ୍ୟାତ ଦୁଇଟି ସ୍ଥାନ ପ୍ରତି ।

ପ୍ରଥମଟି କେନ୍ଦୁଝର ତଥା ଭଦ୍ରଖ, କଟକ ପ୍ରଭୃତି ଅଞ୍ଚଳ ନେଇ ବିଖ୍ୟାତ ଶୈବପୀଠ- ଆଜିର ଦେଓଗାଁ ଶ୍ରୀ କୁଶଳେଶ୍ୱର ମହେଶଙ୍କ ଅଧିଷ୍ଠାନ, ଯାହାକି ଭୌମକର ରାଜବଂଶ ପରିପାଳିତ ବୌଦ୍ଧସ୍ଥଳୀକୁ ସମୂଳ ନିଶ୍ଚିହ୍ନ କରିଦେଇ ଦଶାଶ୍ୱମେଧୀ ଯଜ୍ଞ ରସିକ ସୋମବଂଶୀ ସମ୍ରାଟଙ୍କ ପରିସ୍ଥାନିତ.... ପରିପ୍ଳାବିତ ପ୍ରବର୍ତ୍ତିତ ରୂପାୟିତ ଶୈବ ଧର୍ମର ବିଳାସଭୂମି । ସେଇ ମହାରାଜନ୍ୟ- ମହାମହେଶ୍ୱର ଯଯାତି କେଶରୀ । ସମୟ ନବମ/ ଦଶମ ଶତକ । ସେଠାରେ ଯେତିକି ଧାର୍ମିକ ଐତିହାସିକ ମର୍ମକଥା, ତତୋଽଧିକ ଦୃଷ୍ଟି ନନ୍ଦନ ଶୁଭଗାଥା ସମ୍ଭାର । ସେଇ ଦେବ ଦେଉଳଟିର ନିର୍ମାଣ ଭଙ୍ଗୀ ସୂଚାଇ ଦିଏ ଉତ୍କଳୀୟ ମନ୍ଦିର ନିର୍ମାଣ କଳାର ଆଦ୍ୟ ଦିନମାନଙ୍କର ରେଖ ଦେଉଳ କଥା । ଠାକୁର ତ ଅତି ସୁନ୍ଦର । ପାଣିଫୋଟକା ଆକାରର ଲିଙ୍ଗ- ବୁଦ୍‌ବୁଦ ଲିଙ୍ଗ । ବେଶ୍ ଆକାର ବିଶିଷ୍ଟ ଦର୍ଶନ ନନ୍ଦନ ବିରଳ ରୂପବନ୍ତ ମହାଶିବ ଲିଙ୍ଗ । ସେଠାରେ ପୁଣି ଅଛି- କାଶୀ ବିଶ୍ୱନାଥଙ୍କ ବିଜେସ୍ଥଳୀ ଜ୍ଞାନପୀଠ ସନ୍ନିହିତ ଶୈବ ମୁକ୍ତିମଣ୍ଡପ ତୁଲ୍ୟ ଏକ ସୁରମ୍ୟ ସୁଗଠିତ ମୁକ୍ତିମଣ୍ଡପ.... ପୁଣି ଅଛି.... ପ୍ରାଣମନ ଚମକାଇ ଦେଲାଭଳି କେନ୍ଦୁଝର ଭୂୟାଁ ବିଦ୍ରୋହ ବିକ୍ଷୁବ୍ଧ ନାୟକ ମହାରାଜା ଧନୁର୍ଜ୍ଜୟ ନାରାୟଣ ବାନ୍ଧି ଦେଇଥିବା କୁଶେଇ (-କୁଶଭଦ୍ରା) ନଦୀବନ୍ଧ ଇତ୍ୟାଦି ।

ସେଇ ଦେଓଗାଁ (ଦେବଗ୍ରାମ)ରେ ସେଇ ଶୈବ ଗମ୍ଭୀର ମନ୍ଦିର ସୁରକ୍ଷା ପାଇଁ ଅର୍ଥ ବ୍ୟବସ୍ଥା.... ତା'ର କାର୍ଯ୍ୟକାରିତା ସମ୍ପାଦନା କରାଇବା ଥିଲା ମହତାବଙ୍କର ମହନୀୟ କର୍ତ୍ତବ୍ୟ ଚେତନା । ତାହା ସେ କରାଇଥିଲେ ମଧ୍ୟ ।

ଦ୍ୱିତୀୟ ସ୍ଥାନଟି – ସୀତାବିଞ୍ଜ

କେନ୍ଦୁଝରର ଏଇ ଲଳିତକଳା ତୀର୍ଥ ସୀତାବିଞ୍ଜ ସମଗ୍ର ପୂର୍ବଭାରତରେ ଏକମାତ୍ର ଭିତ୍ତିଚିତ୍ର ନିଦର୍ଶନ ଧାରଣ କରିଛି । ଖ୍ରୀଷ୍ଟପୂର୍ବ ଶତକମାନଙ୍କରେ ତିଷ୍ଠି ରହିଥିବା ଏକ ସମୃଦ୍ଧ ଅଞ୍ଚଳ ।

ଶିଳାଲିପି ଉତ୍ତରପ୍ରଦେଶ, ଡେରାଡୁନ୍ କାଲ୍‌ସିରେ ଥିବା ବୌଦ୍ଧଯୁଗୀୟ ହସ୍ତୀ ସମକକ୍ଷ.... ସମକାଳ ଶ୍ୱେତହସ୍ତୀ... ମୁଖଲିଙ୍ଗମ୍.... ଧ୍ୱଂସାବଶେଷ... ଗୁମ୍ଫା ଉପରେ ଗୁମ୍ଫା ସମାବେଶ.... ବନ୍ଧ୍ୟା ନିର୍ବନ୍ଧ୍ୟା ପରୀକ୍ଷଣ ପ୍ରକ୍ରିୟାର ସୀତା ଅନ୍ତୁଡ଼ିଶାଳ... ବିରାଟ ଖଣ୍ଡଶୈଳ... ମାଟିତଳୁ ପ୍ରାପ୍ତ ବହୁ ଭିନ୍ନ ଆକାର ବିଶିଷ୍ଟ କୁଷାଣ ମୁଦ୍ରା ଇତ୍ୟାଦି ଇତ୍ୟାଦି ବକ୍ଷରେ ଧାରଣ କରିଥିବା ଏଇ ପ୍ରାଚୀନ ଭୂମିରେ ସର୍ବୋପରି ରହିଛି ଏକ ଅପୂର୍ବ ଭିତ୍ତିଚିତ୍ର, ଯାହାର ଲଳିତକଳା ଅଙ୍କନ ନୈପୁଣ୍ୟ ଅଜନ୍ତା ଚିତ୍ରକଳା ସହିତ ବହୁ ଭାବରେ ସାମଞ୍ଜସ୍ୟ ରଖିଥାଏ । ବିଶେଷ କଥା ହେଲା- ଏଇ ସ୍ଥାନଟିକୁ ବୌଦ୍ଧ .... ଶୈବ ପରେ ହିନ୍ଦୁ ବ୍ରାହ୍ମଣ୍ୟ-ପ୍ରବଳ ଯୁଗରେ ରଙ୍ଗାଇ ଦିଆଯାଇଛି । ରାମାୟଣର ରୂପରଙ୍ଗ ଦେଇ । ଏଠାରେ ସବୁକିଛି ସେଇ ରାମାୟଣ ନାମ ରୂପ ବିନ୍ୟସ୍ତ ସ୍ମୃତି ଚିହ୍ନ ।

ଆଜି ଏଇ ସୀତାବିଞ୍ଜ୍ କଥାରେ ଉଜ୍ଜ୍ୱଳି ଉଠିବେ ଦୁଇଜଣ । ଜଣେ ଓଡ଼ିଶାର ଅତୀତ ଗଭର୍ଣ୍ଣର ଡଃ କୈଳାସ ନାଥ କାଟ୍‌ଜୁ, ଅନ୍ୟ ଜଣକ ଏଇ ମହାନ୍ ଐତିହାସିକ ସ୍ମୃତିଧର ଡ.ହରେକୃଷ୍ଣ ମହତାବ ।

ଓଡ଼ିଶାର୍ ରାଜ୍ୟପାଳ ଥିବା କାଟ୍‌ଜୁ ପରିଦର୍ଶନ କରିଥିଲେ କେନ୍ଦୁଝର ସୀତାବିଞ୍ଜ । କାଟ୍‌ଜୁ ମହାଶୟ ତ ଓଡ଼ିଶାରୁ ପଶ୍ଚିମବଙ୍ଗ ରାଜ୍ୟପାଳ ହୋଇଗଲେ, ମନରେ କିନ୍ତୁ ଦୃଢ଼ ନିବନ୍ଧ ଛାପ ହୋଇ ରହିଥିଲା- ସୀତାବିଞ୍ଜ । କଲିକତାରେ ଅନୁଷ୍ଠିତ ଅଖିଳ ଭାରତ ହସ୍ତଶିଳ୍ପ ମେଳାରେ ଯୋଗ ଦେଇଥିବା ଓଡ଼ିଶାର ଲଳିତକଳା ପଣ୍ଡିତ ସ୍ୱର୍ଗତ ଗୋପାଳ କାନୁନ୍‌ଗୋ ଓ କଲିକତା ଆର୍ଟ କଲେଜର ଅଧକ୍ଷ, ଏ ଦୁହିଁଙ୍କୁ ସେ କେନ୍ଦୁଝର ଯାଇ ସୀତାବିଞ୍ଜ ଭିତ୍ତିଚିତ୍ର କଳା ସୁରକ୍ଷା ପାଇଁ ପରାମର୍ଶ ତଥା ବ୍ୟବସ୍ଥା ଗ୍ରହଣ କରିବାକୁ ନିର୍ଦ୍ଦେଶ ଦେଇଥିଲେ । ସେମାନେ ଆସି ଯଥାଯୋଗ୍ୟ ପ୍ରସ୍ତାବ ଦେଲେ ।

କେଡ଼େ ମହାନ୍.... ଉଦାର ହୃଦୟ ସେଇ ମହାମହିମ ରାଜ୍ୟପାଳ ଡ. କାଟ୍‌ଜୁ । ଏପରିକି ସେ ପଶ୍ଚିମବଙ୍ଗରୁ ଭାରତବର୍ଷର ଗୃହମନ୍ତ୍ରୀ ହୋଇଯିବା ପରେ ମଧ ଭୁଲିନଥିଲେ କେନ୍ଦୁଝର ସୀତାବିଞ୍ଜ । ସେବେଳର ଏକ ଉଚ୍ଚସ୍ତରୀୟ ରେଳବାଇ କର୍ମଚାରୀ ଚୟନ ସାକ୍ଷାତ୍‌କାରରେ ସେ ଓଡ଼ିଶାର ଏକ ଯୁବ ପ୍ରାର୍ଥୀଙ୍କୁ ନିଜେ ହିଁ ପଚାରିଥିଲେ ପ୍ରଶ୍ନ- 'ଓଡ଼ିଶାର ପିଲା । ସୀତାବିଞ୍ଜ ଦେଖିଛ ?' ଆହୁରି କୌତୂହଳର ବିଷୟ ହେଲା- ସେଇ ସାକ୍ଷାତ୍‌କାର ନେଉଥିବା ଅନ୍ୟ ଜଣେ ବ୍ରିଟିଶ୍ ପିରିୟଡ଼ର ଆଇ.ସି.ଏସ୍. ବଂଶୀୟ ଅଫିସର, ଯିଏ ମଧ ଓଡ଼ିଶାର ଚିଫ୍ ସେକ୍ରେଟାରୀ ଥିଲେ- ସିଏ ପଚାରିଲେ- ଓଡ଼ିଆ ସାହିତ୍ୟର କବିବର ରାଧାନାଥଙ୍କ 'ଚିଲିକା'ର କିଛି ଅଂଶ ଆବୃତ୍ତି କର । (-ଏଇ କୃତୀ ଯୁବକ ହେଉଛନ୍ତି ଆଜିର ପ୍ରଖ୍ୟାତ ଗାଳ୍ପିକ, ସାହିତ୍ୟିକ, ଅମୃତାୟନ ସାହିତ୍ୟ ପତ୍ରିକାର ସଂପାଦକ ମହାଶୟ, ସାତକଡ଼ି ହୋତା) ।

ତା'ପରେ ଆସିବେ କେନ୍ଦୁଝରର ସୀତାବିଞ୍ଜ୍ ସ୍ମୃତି ସ୍ୱପ୍ନ ବିଳାସୀ- ଡଃ ମହତାବ୍ । ପୂର୍ବୋକ୍ତ କେନ୍ଦୁଝରର ଶୈବ ଐତିହ୍ୟ ସଂରକ୍ଷଣ ଅଭିଳାଷୀ ମହତାବଙ୍କର କେନ୍ଦୁଝରର ସମ୍ବନ୍ଧୀ ଦ୍ୱିତୀୟ ସଂକେତ ଥିଲା- ଏଇ 'ସୀତାବିଞ୍ଜ' । ମହାମାନ୍ୟ କାଟ୍‌ଜୁ ନିର୍ଦ୍ଦେଶ ଦେଲେ ଗୋପାଳ କାନୁନ୍‌ଗୋଙ୍କୁ । ସେପରି ମହତାବ ନିର୍ଦ୍ଦେଶ ନ ଦେଲେ ମଧ୍ୟ ସୀତାବିଞ୍ଜର ଅତୀତ ଉପରେ ଆଲୋକପାତ କରି ଓଡ଼ିଆ ଇତିହାସର ନବଦିଗନ୍ତ ଉଦ୍‌ଭାସିତ କରି ସେ ସ୍ଥାନର ପ୍ରତ୍ନବିଭବ ସଂରକ୍ଷଣ ପାଇଁ ନେଇଥିଲେ ଦୃଢ଼ ସଂକଳ୍ପ । ଏଇ ଗୁରୁଗମ୍ଭୀର କର୍ମ ସମ୍ପାଦନ କରିବାକୁ ସେ ପ୍ରେରଣାରେ ଉଦ୍‌ବୁଦ୍ଧ କଲେ ଓଡ଼ିଶାର ଅନ୍ୟଜଣେ ବିଶିଷ୍ଟ ଐତିହାସିକଙ୍କୁ । ସେ ହେଉଛନ୍ତି ଡକ୍ଟର ମନ୍ମଥ ନାଥ ଦାସ । ସେତେବେଳେ ଭାରତ ସରକାରଙ୍କର ବାଣିଜ୍ୟ ମନ୍ତ୍ରୀ ଥିବା ଡ. ମହତାବ୍ ତାଙ୍କୁ ଲେଖିଲେ.....

''ଆଜି ସୁଦ୍ଧା ସମ୍ବଲପୁରକୁ କେନ୍ଦ୍ରକରି ଯେଉଁ ଅଞ୍ଚଳଟି ଓଡ଼ିଶାର ଏକ ମୁଖ୍ୟ ଅଂଶ, ତା'ର ପୂରା ଇତିହାସ ଜଣାଯାଇନାହିଁ । କେଁଉଝରରେ ସୀତାବିଞ୍ଜର ଯେଉଁ ବିଚିତ୍ର ଆଲେଖ୍ୟ ବର୍ତ୍ତମାନ ଐତିହାସିକର ତୀବ୍ର କୌତୂହଳ ଜାତ କରାଇଛି, ତାହା ସାଧାରଣଙ୍କ ଦୃଷ୍ଟିକୁ ଆସିଲା ମୋଟେ ତିନିବର୍ଷ ହେଲା ଓ ସେ ସମ୍ବନ୍ଧରେ କୌଣସି ତଥ୍ୟ ଅନୁମାନ ସୁଦ୍ଧା କରାଯାଇନାହିଁ । ଯେଉଁ ଅଞ୍ଚଳଟି ଗଡ଼ଜାତ ବୋଲି ପରିଚିତ ଥିଲା, ସେ ଅଞ୍ଚଳଟି ଯେ ଇତିହାସରେ ଭରା ଏଥିରେ ସନ୍ଦେହ ନାହିଁ । ମାତ୍ର ସେ ଇତିହାସ ସମ୍ପୂର୍ଣ୍ଣ ଅଜଣା । ବହୁ ସ୍ଥଳରେ ଶିଳାଲିପିଗୁଡ଼ିକର ବର୍ତ୍ତମାନ ପର୍ଯ୍ୟନ୍ତ ପାଠୋଦ୍ଧାର ହୋଇନାହିଁ ।

XXX

ଯାହାକିଛି ଆମ୍ଭମାନଙ୍କର ଜ୍ଞାନ ଗୋଚର ତାହା ଓଡ଼ିଶାର ଅଞ୍ଚଳ ବିଶେଷର ଇତିହାସ । ତେଣୁ ତାହା ଅପୂର୍ଣ୍ଣ ହେବା ସୁନିଶ୍ଚିତ ।''

ଶ୍ରୀ ହରେକୃଷ୍ଣ ମହତାବ

ନୂତନ ଦିଲ୍ଲୀ

ତା ୧୩.୩.୫୨

(-ମୁଖବନ୍ଧ, ଯୁଗେ ଯୁଗେ ଉତ୍କଳୀୟ ଧର୍ମ ଓ ସଭ୍ୟତା)

-ମନ୍ମଥ ନାଥ ଦାସ୍ ।

ଏହିପରି ମହତାବ୍‌ଙ୍କୁ ନେଇ ଅତୀତରେ ଦୁଇ ଦୁଇ କେନ୍ଦୁଝରର ପ୍ରତ୍ନ ସଂରକ୍ଷଣ ଚେତନା ଜାଗି ଉଠିଥିଲା । ଗୋଟିଏ କାର୍ଯ୍ୟକାରୀ ହେଲା, ଅନ୍ୟଟି ଯେ ସୀତାବିଞ୍ଜ, ତାର ଅପଚୟ.... ଅବକ୍ଷୟ ତାଙ୍କ ଜୀବଦ୍ଦଶାରେ ଆରମ୍ଭ ହୋଇଯାଇଥିଲା କହିଲେ ଚଳିବ । ସୀତାବିଞ୍ଜ୍

ପରିଦର୍ଶନ.... ଲିପି ପ୍ରାଠୋଦ୍ଧାର ଚେଷ୍ଟା... ଚିତ୍ରକଳା ନିମ୍ନସ୍ଥ ବ୍ରାହ୍ମୀଲିପି ନେଇ କାଳ ନିର୍ଣ୍ଣୟ ପ୍ରଚେଷ୍ଟା କରାଯାଇଛି । ଭାରତ ବାହାରେ ସ୍ୱିଜରଲ୍ୟାଣ୍ଡରେ ପ୍ରତିଛବି ପ୍ରକାଶିତ ହୋଇଛି । ବମ୍ବେରୁ ଟାଟା ସାଂସ୍କୃତିକ ପତ୍ରିକା 'ମାର୍ଗ'ରେ ମଧ୍ୟ କିଛି ବିବରଣୀ ସହ ଫଟୋ ପ୍ରକାଶିତ ହୋଇଛି । ମାତ୍ର ଅତି ଦୁଃଖ – ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ଏହାର ଏକ ପ୍ରତିଛବି ସର୍ବସାଧାରଣଙ୍କ ଦୃଷ୍ଟିକୁ ଆଣି ଜଣାଇ ଦେବାର ବ୍ୟବସ୍ଥା ହୋଇନାହିଁ , ହୋଇ ମଧ୍ୟ ପାରିବ ନାହିଁ । କାରଣ ଆଜି ସୀତାବିଞ୍ଜର ସେଇ ଲଳିତକଳା ସମ୍ପଦ (–ଭିତ୍ତିଚିତ୍ର) ପ୍ରାୟ ଏକବାରେ ନିଷ୍ପ୍ରଭ । ଚିହ୍ନି ଚିହ୍ନାଇ ଦେବା ସ୍ତରରେ ମଧ୍ୟ ନାହିଁ । ନିରୀହ.... ନୀରବ କେନ୍ଦୁଝର ।

କେନ୍ଦୁଝରର ଏଇ କଳା ସମ୍ପଦକୁ ହରଣ କରିନେଇଛି– ମହାକାଳ । ଶତାବ୍ଦୀ ଶତାବ୍ଦୀ ଧରି ଜୀବନ୍ତ ରଙ୍ଗ ମହୋଜ୍ଜ୍ୱଳ ହୋଇ ହସି ଉଠୁଥିବା ଚିତ୍ରକଳା କେଉଁ ରହସ୍ୟମୟ ପରିସ୍ଥିତିରେ ମାତ୍ର ପଚାଶ ବର୍ଷରେ ଲୁଚିଗଲା... ହଜିଗଲା, କିଏ ତା'ର କାରଣ ଅନୁସନ୍ଧାନ କରିବ ! ଏଥିରେ ଦାରୁଣ ମର୍ମାହତ ହୋଇ ସ୍ୱର୍ଗତ ଗୋପାଳ କାନୁନ୍‌ଗୋ କଟୁ ମନ୍ତବ୍ୟ ଦେଇଥିଲେ.........

" ଯଦି ଇଂରେଜ ଶାସିତ ଭାରତରେ ହାଇଦ୍ରାବାଦ୍ ନିଜାମ ତାଙ୍କ ରାଜ୍ୟରେ ଅଜନ୍ତା ଚିତ୍ରକଳା– ମାଳାର ସଂରକ୍ଷଣ କରିପାରିଲେ, ଓଡ଼ିଶାରେ 'କେନ୍ଦୁଝର ସୀତାବିଞ୍ଜ' ପାଇଁ ସେପରି ଚେଷ୍ଟା ହେଲାନାହିଁ କାହିଁକି ?"

(– ଓଡ଼ିଶାର ଚିତ୍ରକଳା)

ତଥାପି, ଯେତିକି ଅଛି ଅନ୍ୟାନ୍ୟ ଦର୍ଶନୀୟ ପ୍ରତ୍ନ ବିଭବ ସହିତ ଭିତ୍ତି ଚିତ୍ରର ଅତୀତ ସୁନାମ କଳା ମର୍ଯ୍ୟାଦା ଏବେ ମଧ୍ୟ ଆକୃଷ୍ଟ କରି ରଖୁଛି ପ୍ରତ୍ନତତ୍ତ୍ୱପ୍ରେମୀ ଲୋକଙ୍କୁ..... ପର୍ଯ୍ୟଟକମାନଙ୍କୁ । ଏଇ ବର୍ଷ ସୁଦୂର ଜର୍ମାନୀରୁ ଆସିଥିଲେ ଓଡ଼ିଶାର ଶ୍ରୀଜଗନ୍ନାଥ ଐତିହ୍ୟବିତ୍ ଐତିହାସିକ ଡ. ହରମ୍ୟାନ୍ କୁଲ୍‌କେ । ତାଙ୍କ ସହ ଏଇ ଲେଖକ ବୁଲି ବୁଲି ଦେଖି ଦେଖାଇ... ବୁଝାଇବାରେ ବିତିଯାଇଥିଲା ବହୁ ମୂଲ୍ୟବାନ୍ ମୁହୂର୍ତ୍ତ । ସେତିକିବେଳେ ବେଶୀ ମନେପଡୁଥିଲେ ଐତିହାସିକ ମହତାବ୍ ।

*ଜେଲ୍‌ରୋଡ଼, କେନ୍ଦୁଝର-୧*



# ସ୍ୱାଧୀନତା ପରବର୍ତ୍ତୀ ଇତିହାସରେ ମହତାବଙ୍କ ହସ୍ତାକ୍ଷର

ମେଜର କ୍ଷୀରୌଦ ପ୍ରସାଦ୍ ମହାନ୍ତି

ଆମ୍ଭେମାନେ ନୂତନ ସହସ୍ରାବ୍ଦର ନୂତନ ଶତାବ୍ଦୀରେ ପାଦଦେଇ ସାରିଲେଣି । ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବଙ୍କୁ ତାଙ୍କ ଜୟନ୍ତୀ ପରିପ୍ରେକ୍ଷୀରେ ସ୍ମରଣ କଲେ ସେ ଆମ ଆଗରେ ବିଗତ ଶତାବ୍ଦୀର ଜଣେ ଜନପ୍ରିୟ ନେତା, ରାଷ୍ଟ୍ରନୀତିଜ୍ଞ, ସମାଜସେବୀ, ଐତିହାସିକ, ସାହିତ୍ୟିକ ଆଉ ଦରଦୀ ବନ୍ଧୁ ଭାବରେ ଆଗକୁ ଆସିବେ । ତାଙ୍କର ଅମ୍ଳାନ ସ୍ମୃତିକୁ ମନରୁ ପୋଛିଦେଇ ହେବ ନାହିଁ । ତାଙ୍କ ଜୀବନ କାଳରେ ଉତ୍ତର ପିଢ଼ିକୁ ସେ ଦେଇଥିବା ଦିଗ୍‌ଦର୍ଶନ ଆମମାନଙ୍କୁ ତାଙ୍କ ପ୍ରତି ଆକର୍ଷିତ କରିବ । ତାଙ୍କର ପ୍ରତ୍ୟେକ ଅବଦାନ ଅଧ୍ୟାୟ ଅଧ୍ୟାୟ କରି ଆମ ଇତିହାସକୁ ମଣ୍ଡନ କରିବ । ଦେଶର ସ୍ୱାଧୀନତା ପୂର୍ବରୁ ଓ ପରେ ଦୀର୍ଘକାଳ ଧରି ଓଡ଼ିଶାର ପ୍ରଗତିର ସୂତ୍ରଧର ଭାବରେ ସେ ମନେରହିବେ । କିନ୍ତୁ ଏଇଠି ପ୍ରଶ୍ନ ଆସିବ ଯେ ମହତାବଙ୍କ ସ୍ମୃତି କ'ଣ ଦେଶବାସୀ କୃତଜ୍ଞତା ସହିତ ସବୁବେଳେ ମନେ ରଖିବେ ? ସମଗ୍ର ଦେଶ ପାଇଁ ତାଙ୍କର ଅବଦାନ କ'ଣ ? ଏସବୁ ପ୍ରଶ୍ନର ସହଜ ଉତ୍ତର ମନକୁ ମନ ଆମ ପାଇଁ ଆସିବ । ସେଥିନେଇ ଦ୍ୱନ୍ଦ୍ୱର ଅବକାଶ ମଧ୍ୟ ରହିବ ନାହିଁ ।

ଆମର ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଯେଉଁ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇଥିଲା, ୧୯୪୭ ଅଗଷ୍ଟ ୧୫ରେ ଦେଶ ସ୍ୱାଧୀନତା ହାସଲ କଲାପରେ ତା'ର ପରିସମାପ୍ତି ଘଟିଲା । ଦେଶ ସ୍ୱାଧୀନ ହେଲା । ଏହି ସ୍ୱାଧୀନତା ଲାଭ କରିବା ପାଇଁ ଅଗଣିତ ଭାରତୀୟ ନିଜର ଜୀବନକୁ ବଳି ଦେଇଥିଲେ । ହଜାର ହଜାର ସ୍ୱାଧୀନତା ସଂଗ୍ରାମୀ ନିଜ ନିଜର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ଦେଶର ସ୍ୱାଧୀନତା ପାଇଁ ଅହରହ ସଂଗ୍ରାମ କରିଥିଲେ । ସ୍ୱାଧୀନତା ଆସିଲା ସତ୍ୟ, ମହମ୍ମଦ ଅଲ୍ଲୀ ଜିନ୍ନାଙ୍କ ନେତୃତ୍ୱରେ କଠୋରପନ୍ଥୀ ମୁସଲମାନ ସମ୍ପ୍ରଦାୟର ତଥାକଥିତ ନେତୃବୃନ୍ଦ ଦେଶର ବିଭାଜନ କରାଇଦେଲେ । ବାପୁଙ୍କର ହୃଦୟ

ବ୍ୟଥାରେ ଭାଙ୍ଗିପଡ଼ିଲା । ଦେଶର ବିଭାଜନ ନ ଚାହୁଁଥିଲେ ମଧ୍ୟ କେତେକଙ୍କ ଜିଦି ଫଳରେ ଯେଉଁ ପରିସ୍ଥିତି ଉପୁଜିଥିଲା ତାକୁ ସେ ଅବସ୍ଥାରେ ଆଉ ଟାଳି ଦେଇ ପାରି ନଥିଲେ । ପ୍ରାୟ ଦେଢ଼ ଶହ ବର୍ଷ ଧରି ଯେଉଁ ଇଂରେଜମାନେ ଆମ୍ଭଙ୍କୁ ଶାସନ କରୁଥିଲେ, ସେମାନେ ଆମକୁ ସ୍ୱାଧୀନତା ଦେବା ସମୟରେ ଏପରି ଏକ ପରିସ୍ଥିତି ସୃଷ୍ଟି କରିପକାଇଲେ ଯେ ଭାରତ ଉପମହାଦେଶରେ ବିଭାଜିତ ହୋଇ କେବଳ ଭାରତ ଆଉ ପାକିସ୍ତାନ ରହିବେ ନାହିଁ, ବରଂ ଶହ ଶହ ଦେଶୀୟ ରାଜ୍ୟ ମଧ୍ୟ ଭାରତ ଭୂଖଣ୍ଡରେ ସ୍ୱାଧୀନ ରାଷ୍ଟ୍ର ହୋଇ ରହିବେ । ବ୍ରିଟିଶ ପାର୍ଲିଆମେଣ୍ଟରେ ଗୃହୀତ ହୋଇଥିବା ଇଣ୍ଡିଆନ୍ ଇଣ୍ଡିପେଣ୍ଡେନ୍ସ ଆକ୍ଟ-୧୯୪୭ ଓ ଇନ୍‌ଷ୍ଟ୍ରୁମେଣ୍ଟ ଅଫ୍ ଆକ୍‌ସେସନ୍ ବ୍ୟବସ୍ଥା ଏହି ଦେଶୀୟ ରାଜ୍ୟମାନଙ୍କୁ ଏପରି ମାନ୍ୟତା ପ୍ରଦାନ କଲା ଯେ, ଇଚ୍ଛା କଲେ ସେମାନେ ସ୍ୱାଧୀନ ଭାବରେ ରହିପାରିବେ ଓ ଇଚ୍ଛା କଲେ ଭାରତ କି ପାକିସ୍ତାନ ରାଷ୍ଟ୍ରରେ ଯୋଗ ଦେଇ ପାରିବେ ଇତ୍ୟାଦି ଇତ୍ୟାଦି...

ଦେଶ ତ ସ୍ୱାଧୀନ ହୋଇଗଲା । ଆମ ଲୋକଙ୍କର ଶାସନ ପ୍ରତିଷ୍ଠା ହୋଇଗଲା । କିନ୍ତୁ ବିଭାଜନକୁ ନେଇ ଉଭୟ ପଟେ ଯେଉଁ ହିଂସା ଆଉ ନରସଂହାର ସଂଘଟିତ ହେଲା, ତାହା ସମଗ୍ର ଉପମହାଦେଶକୁ ସ୍ତମ୍ଭୀଭୂତ କରିପକାଇଲା । ସ୍ୱାଧୀନ ଭାବରେ ରହିବାର ଓ ଶାସନ କରିବାର ଭରସା ରହିଲା ନାହିଁ । ବୋଝ ଉପରକୁ ନଳିତାବିଡ଼ା ପରି ଦେଶୀୟ ରାଜ୍ୟମାନେ ଯେଉଁମାନେ ଇଂରେଜ ଶାସନର କରଦ ରାଜ୍ୟ ଥିଲେ ସ୍ୱାଧୀନ ରାଷ୍ଟ୍ରରେ ପରିଣତ ହୋଇଯିବାର ବ୍ୟବସ୍ଥା ଭାରତର ଏକତା ଉପରେ ଏପରି ପ୍ରହାର କଲା ଯେ, ତାହା ପରାଧୀନତା ସମୟର ଦୁଃଖକୁ ବଳିଗଲା ।

ହରେକୃଷ୍ଣ ମହ୍‌ତାବ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଦେଶର ସ୍ୱାଧୀନତା ଆନ୍ଦୋଳନରେ ସକ୍ରିୟ ଭାବରେ ଯୋଗ ଦେଇ ଦେଶର ସ୍ୱାଧୀନତା ପାଇଁ ନିଜକୁ ଉତ୍ସର୍ଗ କରିଥିଲେ । ସ୍ୱାଧୀନତା ପୂର୍ବରୁ ଓ ପରେ ଓଡ଼ିଶା ପ୍ରଦେଶରେ ତାଙ୍କୁ ରାଜ୍ୟ ସରକାରଙ୍କ ଶାସନ ମୁଖ୍ୟ ଭାବରେ ଦାୟିତ୍ୱ ନେବାକୁ ପଡ଼ିଥିଲା । ଦେଶୀୟ କରଦ ରାଜ୍ୟମାନେ ସ୍ୱାଧୀନ ହୋଇ ରହିଯିବେ, ଏକଥା ଦେଶର ଏକତାକୁ ବିପଦାପନ୍ନ କରି ପକାଇବାର ଆଶଙ୍କାରେ ମହତାବ ବିବ୍ରତ ହୋଇପଡ଼ିଲେ । ସେ ସ୍ୱାଧୀନତା ଆନ୍ଦୋଳନ ସମୟରେ ଓଡ଼ିଶାର ଦେଶୀୟ ରାଜ୍ୟ ବା ଗଡ଼ଜାତ ଅଞ୍ଚଳରେ ସ୍ୱାଧୀନତା ଆନ୍ଦୋଳନକୁ ମଧ୍ୟ ପ୍ରସାରିତ କରିଥିଲେ । ରାଜାଶାସନ ଲୋପ ହୋଇ ଗଣତନ୍ତ୍ର ପ୍ରତିଷ୍ଠା ହେବାର ସ୍ୱପ୍ନ ସେ ଅଞ୍ଚଳର ଲୋକମାନଙ୍କୁ ଦେଖାଇଥିଲେ ଏବଂ ବିଂଶ ଶତାବ୍ଦୀରେ ରାଜାମାନଙ୍କର ଶାସନ ଗ୍ରହଣୀୟ ହେବ ନାହିଁ ବୋଲି କହିଥିଲେ । ମହତାବ ଗଡ଼ଜାତର ପ୍ରଜାମାନଙ୍କୁ ସଂଘଟିତ କରି ପ୍ରଜାମଣ୍ଡଳ ଆନ୍ଦୋଳନର ଶୁଭାରମ୍ଭ କରାଇଥିଲେ । ତାଙ୍କ ସାଙ୍ଗରେ କାନ୍ଧକୁ କାନ୍ଧ ମିଳାଇ କାମ କରିବା ପାଇଁ ବାହାରି ଆସିଥିଲେ ପ୍ରାଣନାଥ ପଟ୍ଟନାୟକ, ପବିତ୍ର ମୋହନ ପ୍ରଧାନ, କପିଳେଶ୍ୱର ନନ୍ଦ, ସାରଙ୍ଗଧର ଦାସ,

ବୈଷ୍ଣବ ଚରଣ ପଟ୍ଟନାୟକ ପ୍ରଭୃତି । ସ୍ୱାଧୀନତା ଆନ୍ଦୋଳନ ସମୟରୁ ଓଡ଼ିଶାର ସମସ୍ତ ଦେଶୀୟ ରାଜ୍ୟ ଅଞ୍ଚଳ ଓଡ଼ିଶାର ବୋଲି ତାଙ୍କର ଅନୁଭବ ଥିଲା । ସେ ଏହି ଅଞ୍ଚଳରେ ଘଟୁଥିବା ପ୍ରତ୍ୟେକ ଦୁଃଖ ସୁଖରେ ନିଜକୁ ଭାଗୀ କରାଉଥିଲେ । ସବୁ ଘଟଣାବଳୀକୁ କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷଙ୍କ ଆଗରେ ଉପସ୍ଥାପିତ କରୁଥିଲେ ।

ଓଡ଼ିଶାରେ ହରେକୃଷ୍ଣ ମହତାବ ଶାସନ ଦାୟିତ୍ୱ ବହନ କରିବା ସମୟରେ ଆମ ଦେଶର ଶାସନ ଜବାହରଲାଲ ନେହେରୁ ଓ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ଉପରେ ନ୍ୟସ୍ତ ଥିଲା । ବାପୁଙ୍କର ଡାହାଣ ହାତ ଓ ବାମହାତ ହୋଇ ପ୍ରଧାନମନ୍ତ୍ରୀ ଆଉ ଉପପ୍ରଧାନମନ୍ତ୍ରୀ ଭାବରେ ସେମାନେ ସ୍ୱାଧୀନ ଭାରତର ମଙ୍ଗୁଆଳ ହୋଇଥିଲେ । ପଟେଲ ସ୍ୱରାଷ୍ଟ୍ର ବିଭାଗ ଓ ଦେଶୀୟ ରାଜ୍ୟ ଦାୟିତ୍ୱରେ ଥାଆନ୍ତି । ସ୍ୱାଧୀନତା ପରବର୍ତ୍ତୀ ଅବସ୍ଥାରେ ଦେଶବାସୀଙ୍କୁ କିପରି ଉଚ୍ଚାମନର ଶାସନ ଯୋଗାଇଦେବେ, ସେ ନେଇ ଅହରହ ଉଦ୍ୟମ କରୁଥା'ନ୍ତି । ବିଭାଜନ ପରେ ଦେଶର ଅଖଣ୍ଡତାକୁ କିପରି ସୁଦୃଢ଼ କରାଯାଇ ପାରିବ, ସେଥିନେଇ ତାଙ୍କର ବିଭିନ୍ନ ପରିସ୍ଥିତିର ଆକଳନ ଓ ଅଧ୍ୟୟନ ବଡ଼ ଚମତ୍କାର ଥିଲା । କାଶ୍ମୀର, ତିବ୍‌ବତ, ଭାରତର ଆନ୍ତର୍ଜାତିକ ସୀମା, ପାକିସ୍ତାନ ସହିତ ଦ୍ୱିପାକ୍ଷିକ ସମ୍ପର୍କ ନେଇ ତାଙ୍କର ମତାମତ ବଡ଼ ଆଦରଣୀୟ ହୋଇ ସମସ୍ତଙ୍କର ଦୃଷ୍ଟି ଆକର୍ଷଣ କରୁଥିଲା । ଭାରତର ଅଖଣ୍ଡତା ରକ୍ଷା ପାଇଁ ଓ ନୂତନ କରି ପ୍ରତିଷ୍ଠିତ ହୋଇଥିବା ଜାତିର ସ୍ୱାର୍ଥ ପାଇଁ, ଆବଶ୍ୟକ ହେଲେ ସେ ତତ୍କାଳୀନ ପ୍ରଧାନମନ୍ତ୍ରୀ ଜବାହରଲାଲଙ୍କ ମତ ଉପରେ ଭିନ୍ନ ମତ ଦେବାରେ ପଛାଉ ନଥିଲେ । ପରିସ୍ଥିତି ଏପରି ଅସମ୍ଭାଳ ହୋଇ ପଡୁଥିଲା ଯେ, ସେ ବାପୁଙ୍କୁ ସବୁକଥାରେ ପଟେଲଙ୍କୁ ଡକେଇ ଆଣି ବୁଝାଇବାକୁ ପଡୁଥିଲା ।

ହରେକୃଷ୍ଣ ମହତାବ ଏହାର ସୁଯୋଗ ନେବାକୁ ପଛାଇ ନଥିଲେ । ଜାତୀୟ ସ୍ୱାର୍ଥ ସହିତ ଓଡ଼ିଶାର ସ୍ୱାର୍ଥକୁ ଅକ୍ଷୁଣ୍ଣ ରଖିବା ପାଇଁ ତାଙ୍କର ଆବେଗ ତାଙ୍କୁ ସ୍ଥିର କରି ରଖିପାରୁ ନଥିଲା । ପ୍ରଥମେ କିପରି ଓଡ଼ିଶାର ଦେଶୀୟ ରାଜ୍ୟମାନଙ୍କୁ ଓଡ଼ିଶା ସହିତ ମିଶ୍ରଣ କରାଇନେବେ ଏବଂ ସେମାନେ ସମସ୍ତେ ଭାରତ ବର୍ଷର ଅଂଶବିଶେଷ ହୋଇପଡ଼ିବେ, ସେଥିପାଇଁ ସର୍ଦ୍ଦାର ପଟେଲଙ୍କୁ ବିଭିନ୍ନ ପ୍ରସ୍ତାବ ପ୍ରଦାନ କରୁଥିଲେ । ଦେଶୀୟ ରାଜ୍ୟର ମିଶ୍ରଣ ପାଇଁ ଅଦ୍ଭୁତ କାର୍ଯ୍ୟକାରୀ ଯୋଜନା ! ପଟେଲଙ୍କ ବିସ୍ମୟର ସୀମା ରହିଲା ନାହିଁ ! ଓଡ଼ିଶା ଭଳି ପୂର୍ବାଞ୍ଚଳର ଏକ କ୍ଷୁଦ୍ର ପ୍ରଦେଶର ଶାସନ ମୁଖ୍ୟ ସମଗ୍ର ଦେଶ ପାଇଁ ରାଷ୍ଟ୍ର ସମ୍ମୁଖରେ ଏପରି ଅଭିନବ ପ୍ରସ୍ତାବ ଉପସ୍ଥାପିତ କରିପାରୁଛନ୍ତି ! ମହତାବଙ୍କୁ ସେ ଶ୍ରଦ୍ଧାଭାଜନ କରି ପକାଇଥିଲେ । ଏପରି ପ୍ରସ୍ତାବକୁ କାର୍ଯ୍ୟକାରୀ କରାଇବା ପାଇଁ ସେ ନିଜଆଡୁ ଓ କେନ୍ଦ୍ର ସରକାରଙ୍କ ପକ୍ଷରୁ ସ୍ୱୀକୃତି ଦେଇଦେଲେ । ମହତାବ ଏସବୁ କଥା ନେଇ ସବୁବେଳେ ଆଗୁଆ ଦି'ପାଦ ଚାଲିଯାଉଥିଲେ । ବାଲେଶ୍ୱର ଜିଲ୍ଲାରେ ଅନ୍ତର୍ଭୁକ୍ତ ନୀଳଗିରି କରଦରାଜ୍ୟରେ

ଜନ ଆନ୍ଦୋଳନ ତୀବ୍ର ହେଲା । ରାଜା ତାଙ୍କ ଶାସନକୁ ଜାହିର କରିବାରେ ସମର୍ଥ ହୋଇ ପାରିଲେ ନାହିଁ । ଅସମ୍ଭାଳ ପରିସ୍ଥିତି । ରାଜାଙ୍କ ଶାସନ ଚଳାଇ ରଖିବା ପାଇଁ ଓ ଶହ ଶହ ଆନ୍ଦୋଳନକାରୀ ନୀଳଗିରିର ପ୍ରଜାଙ୍କୁ ଗୁଳିମାରି ଟଳାଇ ଦିଆଯିବ ନାହିଁ । ଓଡ଼ିଶା ପ୍ରଶାସନ ମହତାବଙ୍କ ନିର୍ଦ୍ଦେଶରେ ତତ୍ପରତା ପ୍ରକାଶ କଲା । ୧୯୪୭ ନଭେମ୍ବର ମାସରେ ଓଡ଼ିଶା ମିଲିଟାରୀ ପୋଲିସ ବାହିନୀ ନୀଳଗିରିକୁ ଦଖଲ କରିନେଲା । ନୀଳଗିରି ଓଡ଼ିଶାରେ ଅନ୍ତର୍ଭୁକ୍ତ ହେଲା । ରାଜାଙ୍କର ଶାସନ ଲୋପ ପାଇଲା । ନୀଳଗିରି ଶାସନକୁ ନୀଳଗିରିର ଚଉଦ ମାଇଲ ଦୂରରେ ଅବସ୍ଥାପିତ ହୋଇଥିବା ବାଲେଶ୍ୱରର ଜିଲ୍ଲାପାଳ ଓଡ଼ିଶା ସରକାରଙ୍କ ପକ୍ଷରୁ ଅକ୍ତିଆରକୁ ନେଇଗଲେ ।

ଆଉ ମହତାବ ଚୁପ୍ ହୋଇ ବସିପାରିଲେ ନାହିଁ । ସେ ପଟେଲଙ୍କୁ ନିମନ୍ତ୍ରଣ କରି ଆଣିଲେ । ଓଡ଼ିଶାର ଦେଶୀୟ ରାଜ୍ୟମାନଙ୍କର ମିଶ୍ରଣ ପାଇଁ ଓଡ଼ିଶା ମାଟିରେ କଟକରେ ମନ୍ତ୍ରଣା ଆରମ୍ଭ ହୋଇଗଲା । କାଳେ ପରିସ୍ଥିତି ଭାରତ ବିରୁଦ୍ଧରେ ଯିବ, ସେଥିନେଇ ରାଜାମାନଙ୍କର ଶାସନକୁ ପୂରାପୂରି ଲୋପ ନ କରି ରାଜାମାନେ ଓ ପ୍ରାଦେଶିକ ସରକାର ଉଭୟେ ଯୁଗ୍ମଭାବରେ ଶାସନ କରିବାର ପ୍ରସ୍ତାବ ରଖିଥିଲେ କେନ୍ଦ୍ର ସ୍ୱରାଷ୍ଟ୍ର ବିଭାଗର ସେକ୍ରେଟେରୀ ଭି.ପି. ମେନନ । ମହତାବ ଏଥିରେ ଏକମତ ହେଲେ ନାହିଁ ବରଂ ଭି.ପି. ମେନନ୍‌ଙ୍କର ଏ ପ୍ରସ୍ତାବ ଗ୍ରହଣ ନ କରିବା ଲାଗି ସର୍ଦ୍ଦାର ପଟେଲଙ୍କୁ ପ୍ରବର୍ତ୍ତାଇଲେ । ସମସ୍ତଙ୍କୁ ବିସ୍ମିତ କରି ଉଭୟେ ପଟେଲ୍ ଓ ମହତାବ ଓଡ଼ିଶାର ଦେଶୀୟ ରାଜ୍ୟର ରାଜାମାନଙ୍କୁ ସେମାନଙ୍କ ସ୍ୱଇଚ୍ଛାରେ ଓଡ଼ିଶା ସହିତ ମିଶ୍ରଣର ପ୍ରସ୍ତାବ ରଖିଲେ । ମହତାବ ପଟେଲଙ୍କ ମୁହଁରେ କୁହାଇଲେ ''ସରକାରଙ୍କର ମିଶ୍ରଣ ପ୍ରସ୍ତାବ ଗ୍ରହଣ ନ କଲେ, ଦେଶୀୟ ରାଜ୍ୟମାନଙ୍କରେ ଆଇନଶୃଙ୍ଖଳା ରକ୍ଷା କରିବାର ଦାୟିତ୍ୱ ସରକାର ନେଇ ପାରିବେ ନାହିଁ । ନୀଳଗିରିର ଜନଆନ୍ଦୋଳନର ସ୍ମୃତି ରାଜ୍ୟମାନଙ୍କୁ ବିବ୍ରତ କରିଥିଲା । ଦେଶର ସ୍ୱାଧୀନତା ପରେ ସ୍ୱତଃପ୍ରବୃତ୍ତ ଭାବରେ ସୃଷ୍ଟି ହୋଇଥିବା ଜନ ଆନ୍ଦୋଳନକୁ ଆଉ ଦବେଇ ରଖିବା ସେମାନଙ୍କ ପକ୍ଷରେ ସମ୍ଭବ ହୋଇ ନଥାନ୍ତା । ମୟୂରଭଞ୍ଜ ଦେଶୀୟ ରାଜ୍ୟ ବ୍ୟତୀତ ଅନ୍ୟ ସବୁ ଦେଶୀୟ ରାଜ୍ୟ ନିଜ ପାଇଁ କିଛି ସୁବିଧା ସୁଯୋଗ ଆୟ ଓ ସମ୍ମାନ ବନ୍ଦୋବସ୍ତ କରି ଓଡ଼ିଶା ସହିତ ମିଶ୍ରଣ ପାଇଁ ସ୍ୱାକ୍ଷର ଚୂଡ଼ାନ୍ତ କଲେ ଏବଂ ୧୯୪୮ ଜାନୁଆରୀ ପହିଲାରେ ଓଡ଼ିଶା ସହ ମିଶିଲେ । ଓଡ଼ିଶା ତଥା ଦେଶ ସାରା ଏକ ଇତିହାସ ସୃଷ୍ଟି ହେଲା । ମୟୂରଭଞ୍ଜର ରାଜା ତାଙ୍କ ଶାସନ ଭାର ଲୋକମାନଙ୍କୁ ଅର୍ପଣ କରିସାରିଛନ୍ତି କହି ଏପରି ପ୍ରସ୍ତାବରେ ଦସ୍ତଖତ କଲେ ନାହିଁ । କ୍ରମେ ମୟୂରଭଞ୍ଜର ପ୍ରତିଷ୍ଠିତ ଲୋକ ପ୍ରତିନିଧିମାନଙ୍କର ଶାସନ ସେଠି ଉତ୍ପନ୍ନ ହୋଇଥିବା ପରିସ୍ଥିତିକୁ ସମ୍ଭାଳି ପାରିଲେ ନାହିଁ । ଓଡ଼ିଶାରେ ମିଶ୍ରଣ ପାଇଁ ସମ୍ମତ ହେବା ଫଳରେ ଏହାର ବର୍ଷେ ପରେ ଓଡ଼ିଶା ସହ ମୟୂରଭଞ୍ଜର ମିଶ୍ରଣ ହେଲା ।

ସେତେବେଳେ ଯାହାସବୁ ଘଟିଥିଲା, ସେଥିରେ ମହତାବଙ୍କର ଦେଶର ଅଖଣ୍ଡତାକୁ ସୁଦୃଢ଼ କରି ରଖିବା ପାଇଁ ଇଚ୍ଛା ଆଉ ପ୍ରତ୍ୟୁତ୍ପନ୍ନମତି ଗୁଣ ପ୍ରତିଫଳିତ ହୋଇଥିଲା । କୌଣସି କଥା କାର୍ଯ୍ୟକାରୀ କରେଇ ନେବା ପାଇଁ ସେ ଏପରି ବିଚକ୍ଷଣତା ସହିତ କାର୍ଯ୍ୟ କରୁଥିଲେ ଯେ କାହାକୁ ସମୟ ଦେଉ ନଥିଲେ ।

ଦେଶୀୟ ରାଜ୍ୟମାନଙ୍କର ମିଶ୍ରଣ ପାଇଁ ମହତାବଙ୍କର ଯୋଜନା ପଟେଲଙ୍କ ଅଭିଭାବକତ୍ୱରେ ସହଜ ଭାବରେ କାର୍ଯ୍ୟକାରୀ ହେଲା । କିନ୍ତୁ ଭାରତବର୍ଷରେ ଅନ୍ୟାନ୍ୟ ପ୍ରାନ୍ତରରେ ଏହାକୁ କାର୍ଯ୍ୟକାରୀ କରିବା ପାଇଁ ବିଭିନ୍ନ ସମସ୍ୟାର ସାମ୍ନା କରିବାକୁ ପଡ଼ିଥିଲା । କାଶ୍ମୀର କଥା ଆମ୍ଭେମାନେ ଅଙ୍ଗେ ନିଭାଇଛୁ । ଏଥିପାଇଁ ଭାରତ ଆଉ ପାକିସ୍ତାନ ମଧ୍ୟରେ ଯୁଦ୍ଧ ଲାଗିଥିଲା । ଏପର୍ଯ୍ୟନ୍ତ ସେ କଥାଟିର ସମାଧାନ ହୋଇନାହିଁ । କାଶ୍ମୀରକୁ ନେଇ ଭାରତ ପାକିସ୍ତାନ ମୁହାଁମୁହିଁ ହୋଇ ଚଉବନ ବର୍ଷ ହେଲା ରହି ଆସିଛନ୍ତି । ହାଇଦ୍ରାବାଦ ମିଶ୍ରଣ ପାଇଁ ଭାରତର ପୋଲିସ୍ ବାହିନୀ ହସ୍ତକ୍ଷେପ କଲେ । ସେଠିକାର ନିଜାମ ପାକିସ୍ତାନ ପ୍ରରୋଚନାରେ ଜାତିସଂଘର ନିରାପତ୍ତା ପରିଷଦଯାକେ ଦୌଡ଼ିଯାଇଥିଲେ । ଅନ୍ୟାନ୍ୟ ଦେଶୀୟ ରାଜ୍ୟ ଅଲ୍‌ୱାର ଆଉ ଭରତପୁର ମିଶ୍ରଣ ପାଇଁ ମୟୂରଭଞ୍ଜ ପରି ପରିସ୍ଥିତି ସୃଷ୍ଟି ହୋଇଥିଲା । ଦେଶର ପ୍ରଧାନମନ୍ତ୍ରୀ ନେହେରୁ, ଲୌହମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଦେଶର ତତ୍କାଳୀନ ବଡ଼ଲାଟ ଚକ୍ରବର୍ତ୍ତୀ ରାଜଗୋପାଳଚାରୀ, ପ୍ରଶାସନିକ ଓ କୂଟନୈତିକ କ୍ଷେତ୍ରରେ ଦକ୍ଷତା ଲାଭ କରିଥିବା କେ.ଏମ୍. ମୁନ୍‌ସୀ ଆଉ ଭି.ପି. ମେନନ୍ ଆମ ଦେଶର ସମସ୍ତ ଦେଶୀୟ ରାଜ୍ୟର ମିଶ୍ରଣ ପାଇଁ ମହତାବଙ୍କର ଯୋଜନାକୁ ହିଁ କାର୍ଯ୍ୟକାରୀ କରାଉଥିଲେ । ଏଥିପାଇଁ ବହୁ କଷ୍ଟ ସ୍ୱୀକାର କରିବାକୁ ହୋଇଥିଲା । ଏଥିପାଇଁ ମହତାବ ଓଡ଼ିଶାରେ ମୂଳଦୁଆ ପକାଇ ସମଗ୍ର ଦେଶ ପାଇଁ ଅଗ୍ରଣୀ ଭୂମିକା ନେଇ ଏପର୍ଯ୍ୟନ୍ତ ସ୍ମରଣୀୟ ହୋଇ ରହିଛନ୍ତି ।

ଆଜି ଆମ ଦେଶ ବିଶ୍ୱରେ ଏକ ସୁଦୃଢ଼ ତଥା ଜାତି ଭାବରେ ପରିଚିତ । ତା'ର ଅଖଣ୍ଡତା ଉପରେ କେହି ଆଞ୍ଚ ଆଣିବାର ପ୍ରଶ୍ନ ଉଠୁନାହିଁ । ସ୍ୱାଧୀନତାର ଠିକ୍ ପରେ ପରେ ଏଥିପାଇଁ ଯେଉଁ ଭିତ୍ତିଭୂମିର ପ୍ରସ୍ତୁତ ହୋଇଥିଲା, ତାହା ଏପର୍ଯ୍ୟନ୍ତ ଅବିଚଳିତ ଅଛି । ଏଥିନେଇ ମହତାବଙ୍କ ଭୂମିକା ଆମ ଆଗରେ ତାଙ୍କୁ ନମସ୍ୟ କରାଇଛି । ସ୍ୱାଧୀନ ସଂଘୀୟ ରାଷ୍ଟ୍ର ଭାବରେ ଭାରତ ଯେ ପର୍ଯ୍ୟନ୍ତ ବିଶ୍ୱରେ ପ୍ରତିଷ୍ଠିତ ହୋଇଥିବ, ତା'ର ଇତିହାସ ପୃଷ୍ଠାରେ ମହତାବଙ୍କର ଅବିସ୍ମରଣୀୟ ଅବଦାନ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଥିବ ।

*ପ୍ରାକ୍ତନ କୁଳପତି, ଉତ୍ତର ଓଡ଼ିଶା ବିଶ୍ୱବିଦ୍ୟାଳୟ,*

*ଜେଲ୍‌ରୋଡ଼, ଖୋର୍ଦ୍ଧା*

❒ ❒

# ମାର୍ଗ ଉନ୍ମୋଚକ ମହତାବ

## ଅଧ୍ୟାପକ ଶିବରାମ ପାତ୍ର

ଡକ୍ଟର ହରେକୃଷ୍ଣ ମହତାବ ସାହିତ୍ୟ କ୍ଷେତ୍ରରେ ଥିଲେ ସର୍ବମାନ୍ୟ । ବହୁମୁଖୀ ପ୍ରତିଭାର ପ୍ରଚଣ୍ଡ ବ୍ୟକ୍ତିତ୍ୱ । ଆଜୀବନ କଲମ ଧରି ଜାତିକୁ ଦିଗ୍‌ଦର୍ଶନ ଦେଇ ଚାଲିଥିଲେ । ଦୈନିକ ସମ୍ବାଦପତ୍ର 'ପ୍ରଜାତନ୍ତ୍ର'ର 'ଗାଁ ମଜଲିସ୍'ରେ ସାମାଜିକଙ୍କୁ ଓ ମାସିକ ସାହିତ୍ୟପତ୍ର 'ଝଙ୍କାର'ର ସମ୍ପାଦକୀୟରେ ସାହିତ୍ୟିକଙ୍କୁ ସେ ମାର୍ଗଦର୍ଶନ ଦେଉଥିଲେ । କ୍ଲାନ୍ତି ନଥିଲା କି ଶ୍ରାନ୍ତି ନଥିଲା । କ୍ଷମତା କ୍ଷଣସ୍ଥାୟୀ; କିନ୍ତୁ କର୍ତ୍ତବ୍ୟବୋଧ ସଦା ଜାଗ୍ରତ । ବିଚକ୍ଷଣ ରାଷ୍ଟ୍ରନୀତିଜ୍ଞ ସମାଜରେ ସାମଗ୍ରିକ ବିକାଶ ପାଇଁ ବ୍ୟାକୁଳ ଥାନ୍ତି, ସ୍ଥବିରତାକୁ ଦୂର କରିବାକୁ ବ୍ୟଗ୍ର ଥାନ୍ତି । ଆବଶ୍ୟକବେଳେ ଜାତିକୁ ଉଚିତ ଦିଗ୍‌ଦର୍ଶନ ଦେଇ ମାର୍ଗ ଉନ୍ମୋଚନ କରିଥାନ୍ତି । ସ୍ୱର ଜଣେ ଦାୟିତ୍ୱସମ୍ପନ୍ନ ଅଭିଭାବକର ସ୍ୱର । ସଂକଳିତ ଗ୍ରନ୍ଥ 'ଗାଁ ମଜଲିସ୍' ଓ 'ସାହିତ୍ୟର ମାର୍ଗ ଉନ୍ମୋଚନ' (ଝଙ୍କାର ସମ୍ପାଦକୀୟ ସମୂହ) ଅଧ୍ୟୟନ କଲେ ଡକ୍ଟର ମହତାବଙ୍କ ବିଭିନ୍ନ ବକ୍ତବ୍ୟ ସହ ଭେଟ ହୁଏ । ସେସବୁ ଏତେ ବାସ୍ତବଧର୍ମୀ ଯେ ସମସ୍ୟା ଘେରରେ ସଢ଼ୁଥିବା ବ୍ୟକ୍ତି, ସମାଜ ସମାଧାନର ବାଟ ପାଇଯିବ, ତା' ପାଇଁ ସୁଗମ ମାର୍ଗ ଉନ୍ମୋଚିତ ହୋଇଯିବ । ତାଙ୍କ ପ୍ରଦତ୍ତ ମତ ବା ପଥ ପ୍ରେରଣାପ୍ରଦ ଓ ପ୍ରଭାବଶାଳୀ, ଗ୍ରହଣ କଲେ ପୃଥ୍ୱୀ ଉପକୃତ ହେବ ନିଶ୍ଚୟ । ଏଇ ଅବସରରେ ତାଙ୍କର ଗୋଟିଏ ବକ୍ତବ୍ୟ ଉଦ୍ଧାର କରୁଛୁ; ପାଠକେ, ପଢ଼ୁ ପଢ଼ୁ ଶ୍ରଦ୍ଧାର ସହ ହେଜିବେ ଟିକିଏ ଟିକିଏ :

''ଗୃହସ୍ଥ ଯେଉଁଠି ଗଛର ଯତ୍ନ ନିଏ ଓ ସେ ଦିଗରେ ପରିଶ୍ରମ କରେ ସେଠି ଗଛ ସତେଜ । ପୁରାତନ ହେଲେ ମଧ୍ୟ ନୂତନତ୍ୱ ଭରି ରହିଥାଏ । କିନ୍ତୁ ଫଳୁଛି ତ ଫଳୁଥିବ ମନେକରି ଯେଉଁଠି ଗୃହସ୍ଥ ଉଦାସୀନ, ସେଠି ଗଛ ଫଳେ ସତ, ମାତ୍ର ଜୀର୍ଣ୍ଣଶୀର୍ଣ୍ଣ ସେ ଗଛର ରୂପ, ଫଳ ମଧ୍ୟ ଆକାରରେ ଛୋଟ; ଅବହେଳାର ଦୀର୍ଘନିଶ୍ୱାସ ଯେପରି ସେ ଗଛଟିକୁ ଘେରି ରହିଥାଏ । ××× ଯେ ଯେଉଁ ଅବସ୍ଥାରେ ଅଛି, ସେହି ଅବସ୍ଥାରେ ନୈପୁଣ୍ୟ ପ୍ରକାଶ କଲେ ତାହା ଶୋଭାପାଏ ଓ ଆଦୃତ ହୁଏ । ବଡ଼ଲୋକର ସୁନ୍ଦର ଗାଲିଚା ସହିତ ମଧ୍ୟବିତ୍ତ ଶ୍ରେଣୀର ପରିଷ୍କାର ସତରଞ୍ଜି ଓ ଗରିବର ସୁନ୍ଦର ବୁଣାହୋଇଥିବା ହେଁସ ମଶିଣା ସମକକ୍ଷ ଓ

ପ୍ରତିଦ୍ୱନ୍ଦ୍ୱୀ । କିନ୍ତୁ ବନାରସୀ ଗାଲିଚା ସହିତ, ରୁମ ଉପୁଡ଼ି ଯାଇଥିବା ଚିରା ଗାଲିଚା ନୁହେଁ । ପ୍ରତି କ୍ଷେତ୍ରରେ ନିପୁଣତା, ନିପୁଣତାର ପ୍ରତିଦ୍ୱନ୍ଦ୍ୱୀ ହୁଏ । XXX ଆଶାନୁରୂପ ଅର୍ଥର ଅଭାବ ଅଛି, ଏହା ସତ । କିନ୍ତୁ ଭଲ କାରିଗରଟିଏ ଅଳ୍ପ ମଜୁରି ପାଉଛି ବୋଲି କଅଣ ଅସୁନ୍ଦର କାରୁକାର୍ଯ୍ୟ କରିପାରିବ ? ତା' ହୁଏନାହିଁ । କର୍ମନୈପୁଣ୍ୟ ଯେକୌଣସି କ୍ଷେତ୍ରରେ ଫୁଟି ବାହାରେ । XXX ଯତ୍ନର ଅଭାବ ରହୁଛି, ମନର ଅଭାବରୁ । ମନ କାର୍ଯ୍ୟ କରୁଛି ଦୋଷଯୁକ୍ତ ପରିସ୍ଥିତିର ପ୍ରଭାବରେ । ଗରିବ ସାନ୍ତାଳ ଯେତେବେଳେ ତା'ର ନିଜର କୁଡ଼ିଆଟିକୁ ସୁନ୍ଦର ପରିଚ୍ଛନ୍ନ କରିପାରୁଛି, ଅର୍ଥାଭାବ ସୌନ୍ଦର୍ଯ୍ୟର କାରଣ ବୋଲି କିପରି କୁହାଯିବ ? କୌଣସି ଅବସ୍ଥାରେ ଭଗ୍ନମନୋରଥ ଭାବରେ କାର୍ଯ୍ୟ କରିବା ଶ୍ରେୟସ୍କର ନୁହେଁ । ଯେକୌଣସି କାର୍ଯ୍ୟ ହାତକୁ ନେଇ ସେଇଥିରେ ସିଦ୍ଧିଲାଭ କରିବା ପାଇଁ ପ୍ରଯତ୍ନ କରିବା ଉଚିତ । ସେହି ପ୍ରଯତ୍ନରେ ସାର୍ଥକତା ନିହିତ । ଛୋଟ କାମଟିଏ ଯେ ଭଲଭାବରେ କରିପାରୁ ନାହିଁ, ସେ ବଡ଼ କାମ ପାଇଁ ମନ ବଳାଉଥିଲେ ମଧ୍ୟ ସୁବିଧା ମିଳିଲେ ସେ କଦାପି ବଡ଼ କାମ କରିପାରିବେ ନାହିଁ । କର୍ମନିପୁଣତା କାର୍ଯ୍ୟର ଆକାର ଓ ଗୁରୁତ୍ୱ ଉପରେ ନିର୍ଭର କରେ ନାହିଁ । ଏହା ନିଜେ ଏକ ଗୁଣ । ନିପୁଣତାର ସହିତ ଯେ ଘର ଝାଡୁ କରିପାରୁଛି ସେ ସୁବିଧା ପାଇଲେ ଘରକୁ ମଧ୍ୟ ଭଲଭାବରେ ଚଳାଇ ପାରିବ । ଘର ଚଳାଇବ ବୋଲି ମନକରି ଘରଝାଡୁ ଯେ ନ କରିପାରୁଛି ସେ ଘର ମଧ୍ୟ ଚଳାଇ ପାରିବ ନାହିଁ । ପ୍ରତ୍ୟେକ କାର୍ଯ୍ୟରେ କର୍ତ୍ତାର ପ୍ରଯତ୍ନ ପରିଲକ୍ଷିତ ହେଉ ।*

ପାଠକେ ! ମହତାବ ମତର ମର୍ମାର୍ଥ ବୁଝୁଛନ୍ତି ? ୧୯୫୬ର ଅପ୍ରେଲ ମାସର 'ଝଙ୍କାର'ରେ ଓଡ଼ିଆ ପତ୍ରିକା, ପୁସ୍ତକର ସୁଦୃଶ ମୁଦ୍ରଣ ପାଇଁ ପ୍ରସଙ୍ଗ କ୍ରମେ ଯେଉଁ ତାତ୍ତ୍ୱିକ କଥା ସବୁ କହିଥିଲେ ତାହା ବ୍ୟକ୍ତି ଜୀବନ ହେଉ କି ରାଷ୍ଟ୍ର ଜୀବନ ହେଉ ସର୍ବତ୍ର ଯଦି ପରିପାଳିତ ହୁଅନ୍ତା କି ସାଫଲ୍ୟ ନ ମିଳନ୍ତା ! କେବଳ ପୁସ୍ତକ ଶିଳ୍ପ ନୁହଁ ସକଳ ଶିଳ୍ପ, ଶିକ୍ଷା, ଶାସନ, କୃଷି, ନୃତ୍ୟ, ଗୀତ, ବାଣିଜ୍ୟ ସର୍ବତ୍ର ଶ୍ରୀ ଓ ସୌନ୍ଦର୍ଯ୍ୟ ଭରିଯାନ୍ତା । ଆମର ଅଭାବ ବୋଲି କିଛି ରହନ୍ତାନି । ଅଶିକ୍ଷା ନିରକ୍ଷରତା ଦୂର ହୋଇଯାନ୍ତା । ଜାତି ଏକ ସଂସ୍କୃତି ସମ୍ପନ୍ନ ଆଦର୍ଶ ଜାତିର ମାନ୍ୟ ପା'ନ୍ତା । ଗୋଟିଏ ପରେ ଗୋଟିଏ ଶିଳ୍ପସଂସ୍ଥା/ନିଗମ ରୁଗ୍ଣ ହୋଇ ବନ୍ଦ ହୁଅନ୍ତାନି, ରାଜ୍ୟ କାହାର ଦୟାର ପାତ୍ର ହୁଅନ୍ତାନି, ଦେଶର ଏକ ଅଗ୍ରଣୀ ରାଜ୍ୟ ହୁଅନ୍ତା । ସର୍ବମଙ୍ଗଳର ଏ ଅବ୍ୟର୍ଥ ସୂତ୍ରର ବିକଳ୍ପ ନାହିଁ । ଜାତି ଡକ୍ଟର ମହତାବଙ୍କ ଏ ସାଧାରଣ ମତର ଅସାଧାରଣ ଦିଗ ପ୍ରତି ସଚେତନ ହୋଇ ଆଜି ସକ୍ରିୟ ହୁଅନ୍ତା କି !

*୨୩୯୫, ଗୌରୀନଗର*

*ଭୁବନେଶ୍ୱର-୨*



# ଅନନ୍ୟ ଜନନାୟକ : ହରେକୃଷ୍ଣ ମହତାବ

## ଡକ୍ଟର କୈଳାସ ଚନ୍ଦ୍ର ଦାଶ

ହରେକୃଷ୍ଣ ମହତାବ ଓଡ଼ିଶାର ରାଜନୈତିକ ସାଂସ୍କୃତିକ ଇତିହାସର ଏକ ମୁଖ୍ୟ ଚରିତ୍ର । ୧୯୧୭ଠାରୁ ବହୁ ଦଶନ୍ଧି (ଏପରିକି ମୃତ୍ୟୁ ପର୍ଯ୍ୟନ୍ତ) ମହତାବ ଓଡ଼ିଶାର ବହୁବିଧ ଘଟଣା ସହିତ ସଂପୃକ୍ତ ଥିଲେ । ପ୍ରତିବାଦ ଓ ପୁନର୍ଗଠନ ଥିଲା ତାଙ୍କ ଜୀବନର ମହାବ୍ରତ । ସ୍ୱାଧୀନତା ହାସଲ ପୂର୍ବେ ଏବଂ ପରେ ସେ ଥିଲେ ଓଡ଼ିଶାର ଅବିସ୍ମରଣୀୟ ତୁଙ୍ଗନେତା । ଗାନ୍ଧିବାଦୀ ସଂଗ୍ରାମୀ, ସଙ୍ଗଠକ, ସଂସ୍କାରକ, ଐତିହାସିକ ଓ ସଂସ୍କୃତିର ପୁରୋଧା ମହତାବ ଓଡ଼ିଶାର ସାମାଜିକ-ଅର୍ଥନୈତିକ ପ୍ରଗତିର ଅନନ୍ୟ ପୁରୋଧା ଥିଲେ । ତାଙ୍କ ଜୀବନର ଇତିହାସ ବିଂଶ ଶତକ ଓଡ଼ିଶାର ଇତିହାସ କହିଲେ ପ୍ରସଙ୍ଗ ଅତିରଞ୍ଜିତ ହେବନାହିଁ । ବାସ୍ତବରେ ସେ ଥିଲେ ନବଉତ୍କଳର ନିର୍ମାତା, ବୃହତ୍ତର ଓଡ଼ିଶାର କର୍ଣ୍ଣଧାର, ଓଡ଼ିଶାର ରାଜନୀତିକ ଓ ସାଂସ୍କୃତିକ ଇତିହାସର ଏକ ପ୍ରଜ୍ଞାପୁରୁଷ ।

ଓଡ଼ିଶାରେ ମୁକ୍ତିସଂଗ୍ରାମର ନାନା ପର୍ଯ୍ୟାୟରେ ଜନତାଙ୍କୁ ଗାନ୍ଧୀ ଚିନ୍ତାଧାରାରେ ଅନୁପ୍ରାଣିତ କରିବା ସଙ୍ଗେ ସଙ୍ଗେ ସେ ଗ୍ରାମେ ଗ୍ରାମେ ଗଠନାତ୍ମକ କାର୍ଯ୍ୟକ୍ରମର ପ୍ରସାରରେ ବିଶେଷ ଭୂମିକା ଗ୍ରହଣ କରିଥିଲେ । ଅସହଯୋଗ ଆନ୍ଦୋଳନ ପର୍ଯ୍ୟାୟରେ ମହତାବ ପ୍ରତିବାଦୀ ନେତା ହିସାବରେ ମୁଣ୍ଡ ଟେକିଥିଲେ । ବାଲେଶ୍ୱର ଜିଲ୍ଲା କଂଗ୍ରେସ କମିଟିର ସମ୍ପାଦକ ହିସାବରେ ବିପ୍ଳବାତ୍ମକ ଚିନ୍ତାଧାରାର ପ୍ରସାର କରାଇ ମହତାବ ବ୍ରିଟିଶ ସରକାରଙ୍କ ବିରୋଧୀ ଥିଲେ । ୧୯୨୨ରେ ବିପ୍ଳବାତ୍ମକ ପୁସ୍ତିକା ଲୋକମାନଙ୍କ ମଧ୍ୟରେ ପ୍ରସାର କରାଇ ଜନତାଙ୍କୁ ବିଦ୍ରୋହର ଅନଳ ମନ୍ତ୍ରରେ ମନ୍ତ୍ରିତ କରିଥିଲେ । ସାତ ଆଠ ମାସ ମଧ୍ୟରେ (ମାର୍ଚ୍ଚ ୧୯୨୨ ସୁଦ୍ଧା) ବାଲେଶ୍ୱରର ସ୍ୱରାଜ ଆଶ୍ରମରୁ ହାତଲେଖା ପ୍ରଚାରପତ୍ର ସ୍ୱରାଜ ସମ୍ପର୍କରେ ପ୍ରସାର କରାଇ ଉପନିବେଶୀ ଶକ୍ତି ଉପରେ କୁଠାରାଘାତ କରିଥିଲେ । ୧୯୨୧ ନଭେମ୍ବର ୮ରେ ସ୍ୱରାଜ୍ୟ ସମାଚାର ନାମକ ପ୍ରଚାରପତ୍ର ପ୍ରଥମେ ବାଣ୍ଟି ବ୍ରିଟିଶ ସରକାରଙ୍କ ଦୃଷ୍ଟିକୁ ଆସିଲେ । ସେହିପରି ନଭେମ୍ବର ୯ରେ ସ୍ୱରାଜ୍ୟ ସମାଚାର ମଧ୍ୟ ଜନତାଙ୍କୁ ଉପନିବେଶ ବିରୋଧୀ ଚିନ୍ତାରେ ଦୀକ୍ଷିତ କରିଥିଲା । ''ଡିସେମ୍ବର ୧୧ର ସରକାର ଉନ୍ମତ୍ତ'' ଡିସେମ୍ବର ୧୨ର

''ବାଲେଶ୍ୱର ଜିଲ୍ଲା ଛାତ୍ରମାନଙ୍କ ଠାକୁ'', ୧୫ଡିସେମ୍ବରର ''ଯୁଦ୍ଧ ପାଇଁ ଆହ୍ୱାନ'', ୧୮ଡିସେମ୍ବର ''ଭଦ୍ରକବାସୀଙ୍କ ଠାକୁ'' । ଜାନୁଆରୀ ୧୧ର ''ମଦ ଓ ତାଡ଼ି'' ୧୩ ଜାନୁଆରୀର ''କଂଗ୍ରେସ ଓ ସରକାର'', ମାର୍ଚ୍ଚ ୧୩ର ''ମହାତ୍ମା ଗାନ୍ଧୀ ଗିରଫ୍ତାର'' ଏବଂ ୨୪ମାର୍ଚ୍ଚର ''ଏହି ଆରମ୍ଭ, ମହାତ୍ମା ଗାନ୍ଧୀ ଛଅବର୍ଷ କାରାଦଣ୍ଡ'' ପରି ପ୍ରଚାରପତ୍ର ବାଲେଶ୍ୱରରେ ବଣ୍ଟନ କରାଇ ମହତାବ ଜନତା ମଧ୍ୟରେ ଏକ ଜାଗରଣ ସୃଷ୍ଟି କରିଥିଲେ । ସେ ସମସ୍ତ ପ୍ରଚାରପତ୍ରକୁ ସରକାର ବାଜ୍ୟାପ୍ତ କରିବା ସଙ୍ଗେ ସଙ୍ଗେ ମହତାବଙ୍କୁ ଦଣ୍ଡ ଦେବାକୁ ବ୍ୟବସ୍ଥା କରିଥିଲେ । ସେପରି ପ୍ରତିକୂଳ ପରିସ୍ଥିତିରେ ସେ ବେଶ୍ ସାହସର ସହିତ ଗାନ୍ଧୀପନ୍ଥାର ପ୍ରଚାର କରିଥିଲେ । ବାଲେଶ୍ୱରରେ ୧୯୨୨ରେ ତାଙ୍କ ଅଟକ ବନ୍ଦୀ ଥିବା ସମୟରେ ଏକ ଲିଖିତ ବିବୃତି ଦେଇ ମହତାବ ତାଙ୍କ ଉପନିବେଶ ବିରୋଧୀ କାର୍ଯ୍ୟକ୍ରମର ପ୍ରସାର କରାଇଥିଲେ । ଏହା 'ସମାଜ' ଜୁଲାଇ ୧୫, ୧୯୨୨ ଏବଂ 'ଉତ୍କଳ ଦୀପିକା' ୨୨ ଜୁଲାଇ ୧୯୨୨ ସଂଖ୍ୟାମାନଙ୍କରେ ପ୍ରକାଶ ପାଇ ଓଡ଼ିଆ ପାଠକମାନଙ୍କୁ ଆଲୋଡ଼ିତ କରିଥିଲା । ଭାରତରେ ବ୍ରିଟିଶ ଶାସନ ପଦ୍ଧତିକୁ ସେହି ବିବୃତିରେ ସେ ଖୋଲାଖୋଲି ସମାଲୋଚନା କରିଥିଲେ । ଅତ୍ୟାଚାରର ବିଶ୍ୱବ୍ୟାପୀ ଆଧିପତ୍ୟକୁ ମହତାବ ଘୃଣା କରିଥିଲେ । ଯେଉଁମାନେ ଏହି ଅତ୍ୟାଚାରୀ ଶୋଷଣ ପ୍ରଧାନ ଶାସନକୁ ସମର୍ଥନ କରିଥିଲେ ସେମାନଙ୍କୁ ମହତାବ ମହାପାପୀ ଏବଂ ଦେଶର ଘାତକ ରୂପେ ଚିହ୍ନିତ କରିଥିଲେ । ସମଗ୍ର ଅସହଯୋଗ ପର୍ଯ୍ୟାୟରେ ମହତାବ ଜନତାକୁ ଗାନ୍ଧିବାଦୀ ଭାବଧାରାରେ ଅନୁପ୍ରାଣିତ କରିବା ସଙ୍ଗେ ସଙ୍ଗେ ଗଠନାତ୍ମକ ପନ୍ଥାର ମହାମନ୍ତ୍ରରେ ଦୀକ୍ଷିତ କରାଇଥିଲେ । ତରୁଣମାନଙ୍କୁ ଏହି ଆନ୍ଦୋଳନରେ ପ୍ରମୁଖ ଭୂମିକା ନେବାକୁ ସେ ଆହ୍ୱାନ ଦେଇଥିଲେ ।

ନାରୀ ଜାଗରଣ ତାଙ୍କ ଗାନ୍ଧିବାଦୀ କର୍ମପନ୍ଥାର ଏକ ବିଶିଷ୍ଟ ଅଂଶ । ପ୍ରଜାତନ୍ତ୍ର ୧୯୨୭ ସେପ୍ଟେମ୍ବର ୨୬ସୋମବାର ସଂଖ୍ୟାରେ ନାରୀଶକ୍ତିର ଗୁରୁତ୍ୱକୁ ଏକ କ୍ଷୁଦ୍ର କବିତାରେ ସେ ପ୍ରକାଶ କରି ଲେଖିଥିଲେ;

ନ ଜାଗିଲେ ସବୁ ଭାରତ ରମଣୀ
ଜାଗିବ ନାହିଁଟି ଏ ଭାରତ ଭୂମି
ଜାଗ ମାତା ଜାଗ କନ୍ୟା ବା ଭଗିନୀ
ହୁଅ ବୀର ଜାୟା ବୀର ପ୍ରସବିନୀ
ସ୍ତନ୍ୟ ଦୁଗ୍ଧ ଯେବେ ପିଆଅ ଜନନୀ
ଶୁଣାଅ ସନ୍ତାନେ ବିକ୍ରମ କାହାଣୀ
ବୀର ଗୁଣଗାଥା ବୀର କୀର୍ତ୍ତିବାଣୀ
ବୀର ଗର୍ବେ ନାଚି ଉଠୁ ତା ଧମନୀ ।

ପ୍ରଜାତନ୍ତ୍ରର ଉପର ଭାଗରେ ଏହାକୁ ପ୍ରକାଶ କରି ମହତାବ ନାରୀ ଜାଗରଣ ପାଇଁ ଉଦ୍‌ବୋଧନ ଦେଇଥିଲେ । ୧୯୨୯ରେ ବାଲେଶ୍ୱରଠାରେ ଉତ୍କଳ ପ୍ରାଦେଶିକ ସମ୍ମିଳନୀ ସହିତ ନାରୀ ସମ୍ମିଳନୀ ମଧ୍ୟ ହୋଇଥିଲା । ବାଲେଶ୍ୱରରେ ନାରୀମାନଙ୍କର ଜାତୀୟତାବୋଧ ପାଇଁ ମହତାବଙ୍କର ଉଦ୍ୟମ ପ୍ରଶଂସନୀୟ । ଏଥିରେ ତାଙ୍କୁ ନିଶିବାଳା ନାଏକ, ପ୍ରୀତିବାଳା ରାୟ ଓ ଜାହ୍ନବୀ ଦେବୀ ବିଶେଷ ସହଯୋଗ ଦେଇଥିଲେ ।

ଅସହଯୋଗ ପର୍ଯ୍ୟାୟରେ ମହତାବ ସର୍ବପ୍ରଥମେ କୃଷକମାନଙ୍କୁ ସଂଗ୍ରାମପାଇଁ ସଚେତନ କରାଇଥିଲେ । ୧୯୨୯ରେ ଏହି କାର୍ଯ୍ୟପନ୍ଥାପାଇଁ ମହତାବ "ଚଷାଭାଇ ଶୋକ" ନାମକ କବିତା ବାଲେଶ୍ୱର ସ୍ୱରାଜ ମନ୍ଦିରରୁ ପ୍ରକାଶ କରିଥିଲେ । ୧୯୨୯ ମେ ୬ ପ୍ରଜାତନ୍ତ୍ରରେ ଏହି ପୁସ୍ତକକୁ ବିଜ୍ଞାପିତ କରି ମହତାବ କୃଷକମାନଙ୍କୁ ଜାଗୃତି ମାର୍ଗରେ ପରିଚାଳିତ କରିଥିଲେ । ଏଥିରେ ଗ୍ରାମ କୃଷକର ଅବସ୍ଥା ଯଥାଯଥ ରୂପେ ବର୍ଣ୍ଣିତ । ଗାଉଁଲି କଥାରେ ବଡ଼ ବଡ଼ ବିଷୟରେ ଆଲୋଚିତ । କୃଷକ ସମସ୍ତଙ୍କଠାରୁ ବଡ଼ । କୃଷକର ଚୈତନ୍ୟ ଆବଶ୍ୟକ । ସେ କୁ-ସଂସ୍କାରରେ ନିଷ୍ପେଷିତ । ଜାଗ୍ରତ କୃଷକ ଦେଶର ଶାସକ, ଏହିପରି ଅନେକ ବିଷୟ ଅତି ସୁନ୍ଦର ଭାବରେ ମହତାବ ଲେଖିଥିଲେ । ଏହି ପୁସ୍ତକ ଖୁବ୍ ଶୀଘ୍ର ଓଡ଼ିଶାରେ ପ୍ରସାରିତ ହୋଇ ଚାଷୀଜଗତକୁ ଉଦ୍‌ବୋଧିତ କରିଥିଲା । ସେହିପରି ଯୁବକ ଆନ୍ଦୋଳନ ଉପରେ ମହତାବ ଏହି ସମୟରେ ଗୁରୁତ୍ୱ ଦେଇ ଅନେକ ଆଲୋଚନା ପ୍ରକାଶ କରିଥିଲେ । ଗ୍ରାମେ ଗ୍ରାମେ ଓଡ଼ିଶାର ଯୁବକମାନେ ଏକଲବ୍ୟ ପରି କାଞ୍ଚନିକ ଆଦର୍ଶ ଅନୁସରଣ କରି ଅତୀତ ଇତିହାସକୁ ସାକ୍ଷୀ ରଖି ଅଗ୍ରସର ହେବା ଉଚିତ ବୋଲି ସେ ୧୯୨୯ରେ ଆଶା ସମ୍ବାଦପତ୍ରର ଏକ ସଂଖ୍ୟାରେ ମତ ଦେଇଥିଲେ ।

ସ୍ୱାଧୀନତା ଆନ୍ଦୋଳନର ବିଭିନ୍ନ ପର୍ଯ୍ୟାୟରେ ସେ ଓଡ଼ିଶାରେ ପ୍ରମୁଖ ଭୂମିକା ଗ୍ରହଣ କରି ଜଣେ ତୁଙ୍ଗ ଗାନ୍ଧିବାଦୀ ନେତା ହିସାବରେ ସୁପରିଚିତ ହୋଇପାରିଥିଲେ । ସେହିପରି ଦେଶୀୟ ରାଜ୍ୟଗୁଡ଼ିକର ମିଶ୍ରଣ ମାଧ୍ୟମରେ ବୃହତ୍ତର ଓଡ଼ିଶା ଗଠନର ଯୋଜନା ତାଙ୍କର ଅନ୍ୟତମ କାର୍ଯ୍ୟ । ଏହିପାଇଁ ମହତାବଙ୍କୁ ବହୁ ପରିଶ୍ରମ କରିବାକୁ ପଡ଼ିଥିଲା ଏବଂ ବହୁ କଟୁ ସମାଲୋଚନାର ମଧ୍ୟ ସମ୍ମୁଖୀନ ହେବାକୁ ପଡ଼ିଥିଲା । ଐତିହାସିକ, ଭୌଗୋଳିକ, ଅର୍ଥନୈତିକ, ସଂସ୍କୃତିଗତ ପ୍ରଭୃତି ଯେକୌଣସି ଦୃଷ୍ଟିରୁ ହେଉ ଗଡ଼ଜାତଗୁଡ଼ିକ ଓଡ଼ିଶା ପ୍ରଦେଶର ଗୋଟିଏ ଗୋଟିଏ ଅବିଚ୍ଛେଦ୍ୟ ଅଙ୍ଗ ଏବଂ ସେସବୁ ଓଡ଼ିଶାର ସମୂହ ଉନ୍ନତି ପାଇଁ ଓଡ଼ିଶାରୁ ଅଲଗା ହୋଇ ରହିବା ଉଚିତ ନୁହେଁ ବୋଲି ମହତାବ ଦୃଢ଼ ମତପୋଷଣ କରିଥିଲେ । ମହତାବଙ୍କର ଚେଷ୍ଟାରୁ ହିଁ ଓଡ଼ିଶା ସହିତ ଗଡ଼ଜାତ ମିଶ୍ରଣ ସମ୍ଭବ ହୋଇପାରିଲା । ଓଡ଼ିଶାର ପ୍ରଧାନମନ୍ତ୍ରୀ ଆସନରେ ନ ବସିବା ପୂର୍ବେ ଅର୍ଥାତ୍ ୧୯୪୬ ପୂର୍ବରୁ ମହତାବ ଏ ସମସ୍ୟା ସହିତ ଘନିଷ୍ଠ ଭାବେ ସଂପୃକ୍ତ ଥିଲେ । ନିଜେ ଗଡ଼ଜାତ

କମିଟିର ଚେୟାରମ୍ୟାନ୍ ଭାବେ ସେ ବହୁଦିନ ଆଗରୁ ଏ ଦିଗରେ କ୍ରମାଗତ ଚେଷ୍ଟା କରିଥିଲେ । ପୁଣି ପ୍ରଧାନମନ୍ତ୍ରୀ ଭାବେ ସେ ସର୍ବପ୍ରଥମେ ବ୍ରିଟିଶ ମନ୍ତ୍ରୀ ପ୍ରତିନିଧି (Cabinet Mission)ଙ୍କ ଆଗରେ ଏହି ସମସ୍ୟା ଉପସ୍ଥାପିତ କରି ଗଡ଼ଜାତଗୁଡ଼ିକର ଆଶୁ ମିଶ୍ରଣ ଦାବି କରିଥିଲେ । ସେତେବେଳେ ମହତାବଙ୍କର ଏହି ଉଦ୍ୟମକୁ ଅନେକ ଉପହାସ କରିଥିଲେ । କେହି ହେଲେ ସ୍ୱପ୍ନରେ ସୁଦ୍ଧା କଳ୍ପନା କରି ନଥିଲେ ଯେ ମହତାବ ଏହି ଯୋଜନାକୁ ଏତେ ଶୀଘ୍ର କାର୍ଯ୍ୟକାରୀ କରିପାରିବେ । ମହତାବ ବ୍ରିଟିଶ ମନ୍ତ୍ରିମଣ୍ଡଳଙ୍କ ଆଗରେ ଏହି ସମସ୍ୟାର ଉତ୍‌ଥାପନ କରିବା ଦିନୁ ସେ ଗଡ଼ଜାତ ଶାସକମାନଙ୍କର ଚକ୍ଷୁଶୂଳ ହୋଇପଡ଼ିଥିଲେ । ନାନାଦିଗରୁ ତାଙ୍କର ଉଦ୍ୟମକୁ ପଣ୍ଡ କରିବାପାଇଁ ଅନେକେ ପ୍ରତ୍ୟକ୍ଷ ଓ ପରୋକ୍ଷରେ ଚେଷ୍ଟା କଲେ । ଖୋଦ ଓଡ଼ିଶାରେ ସୁଦ୍ଧା ତାଙ୍କର ଉଦ୍ୟମକୁ କେହି କେହି ପସନ୍ଦ କରି ନଥିଲେ । ଓଡ଼ିଶାର ଶାନ୍ତ ବାୟୁମଣ୍ଡଳକୁ ବିଭ୍ରାଟ ଘଟାଉଛନ୍ତି ବୋଲି ସୁଦ୍ଧା ସେ ବାରମ୍ବାର ଅଭିଯୁକ୍ତ ହୋଇଥିଲେ । ତଥାପି ମହତାବ ବିଚଳିତ ହୋଇ ନଥିଲେ ଏବଂ ତାଙ୍କ ଉଦ୍ୟମକୁ କୋହଳ କରିବାପାଇଁ କୌଣସି ଚେଷ୍ଟା କରି ନଥିଲେ । ପରିଶେଷରେ ତାଙ୍କର ଉଦ୍ୟମ ଜୟଯୁକ୍ତ ହୋଇଥିଲା ଏବଂ ମହତାବ ବିଶାଳ ଓଡ଼ିଶା ରାଷ୍ଟ୍ର ଗଠନର ଜନକ ରୂପେ ପରିଚିତ ହୋଇଥିଲେ ।

କଲିକତାରେ ବିଶାଳ ଓଡ଼ିଆ ସମାଜର ଗଠନ ଓ ଓଡ଼ିଆ ଶ୍ରମିକମାନଙ୍କର ଅଗ୍ରଗତି ପାଇଁ ମହତାବଙ୍କର ଅବଦାନ ଅବିସ୍ମରଣୀୟ । କଲିକତାରେ ଓଡ଼ିଆମାନଙ୍କୁ ସଙ୍ଗଠିତ କରି ଉତ୍କଳ ସମ୍ମିଳନୀ ମାଧ୍ୟମରେ କଲିକତା ଓଡ଼ିଆମାନଙ୍କର ପ୍ରଗତି ପାଇଁ ୧୯୨୮ରୁ ମହତାବଙ୍କର ଉଦ୍ୟମ ଅବ୍ୟାହତ ଥିଲା । ୧୯୨୯ରେ କଲିକତା ଓଡ଼ିଆ ସମାଜର ସଭାପତି ହିସାବରେ ମହତାବ ବେଶ୍ ସକ୍ରିୟ ଥିଲେ । ସେତେବେଳେ କଲିକତା ଉତ୍କଳ ସମାଜର ଶାଖା ସମାଜ ସ୍ଥାପନ ପାଇଁ ବିଶେଷ ଗୁରୁତ୍ୱ ଦେଇଥିଲେ । ମହତାବ ୧୯୨୯ଠାରୁ କେତେକ ବର୍ଷ କଲିକତାରେ କେତେକ କର୍ମୀଙ୍କୁ ନେଇ ଓଡ଼ିଆ ଆନ୍ଦୋଳନ ଚଳାଇଥିଲେ । ତାଙ୍କରି ପ୍ରେରଣାରେ ୧୯୪୫ ପର୍ଯ୍ୟନ୍ତ କଲିକତାରେ ଓଡ଼ିଆ ଜାଗରଣ ତେଜି ଉଠିଲା । ୧୯୪୭ ମସିହାରେ କଲିକତା ପ୍ରବାସୀ ଓଡ଼ିଆ ସମ୍ମିଳନୀରେ ସଭାପତିତ୍ୱ କରି କଲିକତା ଓଡ଼ିଆ ସଙ୍ଗଠନକୁ ମହତାବ ଦୃଢ଼ କରିଥିଲେ । ସେତେବେଳେ ପାଞ୍ଚହଜାରରୁ ଊର୍ଦ୍ଧ୍ୱ ପ୍ରବାସୀ ଓଡ଼ିଆ ମହତାବଙ୍କର ଅଧିନାୟକତ୍ୱକୁ ମୁକ୍ତ କଣ୍ଠରେ ଗ୍ରହଣ କରି ନେଇଥିଲେ । ସେହିପରି କଲିକତାରେ ଉତ୍କଳ ଭବନ ନିର୍ମାଣ ପାଇଁ ମହତାବଙ୍କର ଉଦ୍ୟମ ମଧ୍ୟ ପ୍ରଶଂସନୀୟ ଥିଲା ।

ସମାଜ ଓ ସଂସ୍କୃତିର ଅଗ୍ରଗତି ପାଇଁ ତରୁଣ ଅବସ୍ଥାରୁ ମହତାବ ଉଦ୍ୟମ ଚଳାଇଥିଲେ । ଓଡ଼ିଶାରେ ସାଂପ୍ରଦାୟିକ ଓ ପ୍ରାଦେଶିକ ମନୋବୃତ୍ତି ସମ୍ପର୍କୀୟ ଅନୁଷ୍ଠାନଗୁଡ଼ିକ ଜନସାଧାରଣଙ୍କ ମନକୁ ବିକ୍ଷୋଭିତ ନ କରୁ ବୋଲି ମହତାବ ସର୍ବଦା ମତ ଦେଉଥିଲେ । ଗୋଷ୍ଠୀଗତ

ବିବାଦ, ବ୍ରାହ୍ମଣ, କରଣ, ଖଣ୍ଡାୟତ, ଯାଦବ, ରଜକ, ବାରିକ, ପାଣ ଏହିପରି ଗୋଷ୍ଠୀଗତ ବିବାଦୀ ସଙ୍ଗଠନ ଓଡ଼ିଶାରେ ଏକ ମାରାତ୍ମକ ବିପଦ ବୋଲି ସେ ୧୯୪୮-୪୯ରେ ଘୋଷଣା କରିଥିଲେ । ଏହାଦ୍ୱାରା ସାମାଜିକ ଜୀବନ ଗୁରୁତର ଆଘାତ ପାଇଥିଲା ବୋଲି ସେ ଦୃଢ଼ ଭାବରେ କହିଥିଲେ । ଗୋଷ୍ଠୀଗତ ଅନୁଷ୍ଠାନମାନ ଓଡ଼ିଶାରେ ବହୁ ଦିନୁ ଗଢ଼ି ଉଠିଥିଲା- ଚାକିରିଆ, ପାଠୁଆ ଶ୍ରେଣୀର ଲୋକଙ୍କୁ ନେଇ ସଂକୀର୍ଣ୍ଣ ହିତପ୍ରବଣ ଅନୁଷ୍ଠାନମାନ ଅଜ୍ଞାତ ଭାବରେ ସଂକୀର୍ଣ୍ଣ ଗୋଷ୍ଠୀଗତ ମନୋବୃତ୍ତି ଗଢ଼ିବାରେ କାରଣ ହୋଇଥିଲେ । ଏହାକୁ ଦୃଢ଼ ଭାବରେ ମହତାବ ଦୂର କରିବାକୁ ଉଦ୍‌ବୋଧନ ଦେଇଥିଲେ ।

ଓଡ଼ିଆ ସାହିତ୍ୟର ବିକାଶ ପାଇଁ ମହତାବଙ୍କର ଉଦ୍ୟମ ସର୍ବଜନଗ୍ରାହ୍ୟ ଥିଲା । ଓଡ଼ିଆ ଲେଖକ/ ଲେଖିକାମାନଙ୍କୁ ଉତ୍ସାହ ଯୋଗାଇ ଏକ ସାରସ୍ୱତ ପରିବେଶ ସୃଷ୍ଟି କରିବାପାଇଁ ମହତାବଙ୍କ ଉଦ୍ୟମରେ ୧୯୪୯ରେ ମାସିକ ଝଙ୍କାର ପତ୍ରିକା ଜନ୍ମ ନେଇଥିଲା । ଝଙ୍କାର ଜନ୍ମର ଗୋଟିଏ ବର୍ଷ ମଧ୍ୟରେ ଏହା ଲବ୍‌ଧପ୍ରତିଷ୍ଠ ସାହିତ୍ୟିକ, ତରୁଣ ଲେଖକ ଲେଖିକା ଓ ପାଠକପାଠିକାମାନଙ୍କ ସହାନୁଭୂତି ଲାଭ କରିପାରିଥିଲା । 'ଉତ୍କଳ ସାହିତ୍ୟ', 'ପ୍ରଦୀପ', 'ସହକାର', 'ମୁକୁର' ମଉଳି ଯିବାପରେ ମହତାବଙ୍କର 'ଝଙ୍କାର' ସାହିତ୍ୟ ଜଗତରେ ବେଶ୍ ଆଲୋଡ଼ନ ସୃଷ୍ଟି କରିଥିଲା । ମହତାବ ବିଶ୍ୱାସ କରିଥିଲେ- ଝଙ୍କାର ଜନ୍ମିଛି, ବଢ଼ିବ ଓ ସଂସାର କରିବ । ଅନ୍ତରର ଉତ୍ସାହ ଉପରେ ଏବଂ ବିଶ୍ୱାସ ଉପରେ ଏହା ପ୍ରତିଷ୍ଠିତ । ଏହି ପ୍ରସଙ୍ଗରେ ୧୯୫୦ ମସିହାରେ ଝଙ୍କାର ସଂଖ୍ୟାର ଏକ ସମ୍ପାଦକୀୟ ଅଭିମତରେ ସେ କହିଥିଲେ- ''ଯେତିକି ସମୟ ସେ ବଞ୍ଚିବ, ସେତିକିରେ ସେ ନିଜର ଜୀବନ ସାର୍ଥକ କରିପାରିବ । ଏହା ସମସ୍ତଙ୍କର କରାୟତ୍ତ । ଅନ୍ଧାର ରାତିରେ ଯେ ମୁହୂର୍ତ୍ତକ ବିଜୁଳି ପ୍ରାଣ ଧରି ରହେ, ସେହି ମୁହୂର୍ତ୍ତକ ମଧ୍ୟରେ ସେ ଶତଶତ ଯାତ୍ରୀଙ୍କୁ କିଛି ହେଲେ ଆଲୋକ ଦାନ କରି ସେମାନଙ୍କର ପଥ ପ୍ରଦର୍ଶକ ହୋଇପାରେ । ଝଙ୍କାର ଯଦି ସେତିକି ହେଲେ କରିପାରେ, ତେବେ ତା'ର ଜନ୍ମ ସାର୍ଥକ ।'' ରବିବାର ପ୍ରଜାତନ୍ତ୍ର, ମାସିକ ଝଙ୍କାର ମାଧ୍ୟମରେ ମହତାବ ସାରସ୍ୱତ ପରିବେଶ ଓଡ଼ିଶାରେ ସୃଷ୍ଟି କରିଥିଲେ । ଲେଖକଲେଖିକମାନଙ୍କୁ ''ବିଷୁବ ମିଳନ''କୁ ଆମନ୍ତ୍ରଣ କରି ସେମାନଙ୍କ ମଧ୍ୟରେ ବ୍ୟକ୍ତିଗତ ପରିଚୟ ଓ ଭାବର ଆଦାନପ୍ରଦାନ ବାସ୍ତବରେ ଓଡ଼ିଶାରେ ଏକ ନୂଆ କଥା । ଅନ୍ୟ କୌଣସି ପତ୍ରପତ୍ରିକା ଏପରି ଭାବରେ ଏଥିପୂର୍ବରୁ ଜନ୍ମତିଥି ପାଳନ କରୁ ନଥିଲେ । କିନ୍ତୁ ପ୍ରଜାତନ୍ତ୍ର ପ୍ରଚାର ସମିତି ଏ ପନ୍ଥା ଅବଲମ୍ବନ କରି ଅନ୍ତତଃ ଓଡ଼ିଶାରେ ଏକ ନୂତନ ଆଦର୍ଶ ଦେଖାଇଲା । ମହତାବ ଆଶା କରିଥିଲେ ଏ ମିଳନ ବର୍ଷକୁ ବର୍ଷ ଦୃଢ଼ରୁ ଦୃଢ଼ତର ହେବ ଏବଂ ବନ୍ଧୁସଂଖ୍ୟା କ୍ରମେ ବୃଦ୍ଧି ପାଇ ଓଡ଼ିଶାରେ ଏକ ବିଶାଳ ସାହିତ୍ୟିକ ପରିବାର ସୃଷ୍ଟି କରିବ । ଏ ପରିକଳ୍ପନା ବାସ୍ତବିକ ଅସାଧାରଣ ଥିଲା । ୧୯୫୦ ସୁଦ୍ଧା ୯୫ଜଣ ଲେଖକ ଲେଖିକା ଝଙ୍କାର ପୃଷ୍ଠାରେ ମୁଣ୍ଡ

ଟେକିଥିଲେ । ମହତାବ ଆଶା କରିଥିଲେ, କ୍ରମଶଃ ଏହା ବୃଦ୍ଧି ପାଇବ ଏବଂ ଓଡ଼ିଆ ସାହିତ୍ୟ ଭାରତୀୟ ସାହିତ୍ୟ ମଧ୍ୟରେ ପ୍ରଧାନ ହେବ । ନବୀନ ଓ ପ୍ରବୀଣ ଉଭୟ ଶ୍ରେଣୀର ଲେଖକଲେଖିକାମାନଙ୍କୁ ମହତାବ ଉତ୍ସାହିତ କରିଥିଲେ । ସେ ବିଶ୍ୱାସ ରଖିଥିଲେ ସାହିତ୍ୟ ଗତିଶୀଳ । ସାହିତ୍ୟ କାହାକୁ ଅପେକ୍ଷା କରେନାହିଁ । ସେ ତା'ର ଗତି କରିଯିବ । କେହି ସେଥିରେ ଯୋଗ ଦେଉ ବା ନ ଦେଉ ।

ଏହିପରି ଭାବରେ ଗଠନାତ୍ମକ କାର୍ଯ୍ୟଶାଳା ସହିତ ଦେଶର ସାଂସ୍କୃତିକ ଧାରାର ସଂପ୍ରସାରଣ ପାଇଁ ତାଙ୍କର ଉଦ୍ୟମ ବାସ୍ତବିକ ଅନନ୍ୟ ସାଧାରଣ । ଓଡ଼ିଶାର ବୌଦ୍ଧିକ ମାନସକୁ ଶାଣିତ କରି ଚିନ୍ତା ଓ ଚେତନାରେ ସେ ନୂତନ ଦିଗନ୍ତ ଦେଖାଇଥିଲେ । ବ୍ରହ୍ମପୁରରେ ଅନୁଷ୍ଠିତ ମହତାବ ଷଷ୍ଠୀ ପୂର୍ତ୍ତି ଉତ୍ସବ (୧୯୫୯)ରେ ତାଙ୍କୁ ଶ୍ରଦ୍ଧାଞ୍ଜଳି ଦେଇ ସତ୍ୟନାରାୟଣ ପଟ୍ଟନାୟକ ଏକ କବିତା ସାପ୍ତାହିକ 'ନବୀନ'ରେ ପ୍ରକାଶ କରିଥିଲେ । ସେଥିରେ ସେ ଲେଖିଥିଲେ :

ଧରମାପରି ଯେ ଗଢ଼ିଲେ କୀରତି, ରୋକି ହୀରାକୁଦ ପାଣି
ବିଶାଳ ଓଡ଼ିଶା ଗଢ଼ିଲେ ଯେ ବୀର ଉଚ୍ଚ ନୀଚ ଭେଦ ହାଣି
ସାହାଜାନ୍ ପରି ତୋଳିଗଲେ ଯିଏ ନଗରୀ ପାନ୍ଥଶାଳା
ଅଶୋକ ପରି ଯେ ପ୍ରଚାରିଲେ ଦେଶେ ଗାନ୍ଧୀ ଭଜନମାଳା
ଝଙ୍କାରେ ଦେଲେ ଭାଷାର ଝଙ୍କାର, ଜାଳିଲେ ବିଜୁଳିବତୀ
କବି କଲମରେ ଛବି ଆଙ୍କିଗଲେ ଭାଷାର ଅମରାବତୀ
ଶାସନର ଶୀର୍ଷ ଆସନରେ ବସି ଗଢ଼ିଲେ ରାମ ରାଜୁତି
ଜନଗଣ ମନ ଅଧିନାୟକ ସେ ରଚିଲେ ଏକତା ପ୍ରୀତି
ମୁକ୍ତି ପତାକା ତଳେ
ଯୁଗ ଯୁଗ ଜିଇଁ ହୁଅନ୍ତୁ ଅମର
ଜାତିର ଆଶିଷ ବଳେ ।

ଯଥାର୍ଥରେ ମହତାବ ଥିଲେ ଅନନ୍ୟ ସାଧାରଣ ଜନନାୟକ ।

*ସି-୩/୨, ବି.ଜେ.ବି. ନଗର,*
*ଭୁବନେଶ୍ୱର-୧୪*



# ଓଡ଼ିଶା ରାଜନୀତିର ଭୀଷ୍ମ ପିତାମହ ଡକ୍ଟର ମହତାବ

ଡକ୍ଟର ଦୀପେନ୍ କୁମାର ପଟ୍ଟନାୟକ

ଓଡ଼ିଶାର ରାଜନୈତିକ ବିକାଶ କ୍ଷେତ୍ରରେ ଉତ୍କଳ କେଶରୀ ଡଃ ହରେକୃଷ୍ଣ ମହତାବ ଇତିହାସ ସୃଷ୍ଟି କରି ଯାଇଛନ୍ତି । ଓଡ଼ିଶାର ରାଜନୈତିକ-କ୍ରୀଡାକ୍ଷେତ୍ରରେ ସେ ଥିଲେ ଅପରାଜିତ ବ୍ୟାଟ୍ସମ୍ୟାନ୍ । ସେ ୧୮୯୯ ମସିହା ନଭେମ୍ବର ମାସ ୨୧ ତାରିଖର ଏକ ଶୁଭମୁହୂର୍ତ୍ତରେ ବାଲେଶ୍ୱର ଜିଲ୍ଲାର ଅଗରପଡା ଗ୍ରାମର ଏକ ସମ୍ଭ୍ରାନ୍ତ ପରିବାରରେ ଜନ୍ମଗ୍ରହଣ କରିଥିଲେ । ହରେକୃଷ୍ଣଙ୍କର ମାତା ତୋଫା ବିବି ଅଗରପଡା ଜମିଦାର ଜଗନ୍ନାଥ ମହତାବଙ୍କର ଝିଅ । ତାଙ୍କ ପିତାଙ୍କର ଅନ୍ୟ କୌଣସି ପୁତ୍ର ସନ୍ତାନ ନଥିଲେ । ତେଣୁ ଜଗନ୍ନାଥ ମହତାବ ନିଜର ବଂଶରକ୍ଷା ଓ ଜମିଦାରୀ ବଞ୍ଚାଇବା ପାଇଁ ନାତିକୁ ପୋଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ । ଜଗନ୍ନାଥ ମହତାବଙ୍କ ଅକାଳ ବିୟୋଗ ପରେ ଅଗରପଡା ଜମିଦାରୀର ମାଲିକ ହେଲେ ହରେକୃଷ୍ଣ ମହତାବ । ସେ ଅଗରପଡାର ରାଜା ଭାବରେ ପରିଚିତ ହେଲେ । ସେ ସମୟରେ ହରେକୃଷ୍ଣ ନାବାଳକ ଥିବାରୁ ତାଙ୍କ ଜନ୍ମଦାତା ପିତା କୃଷ୍ଣଚରଣ ଦାସ ଜମିଦାରୀର ସମସ୍ତ ବିଷୟ ବୁଝିଲେ । ହରେକୃଷ୍ଣ ଗାଁ ସ୍କୁଲରୁ ପାଠପଢ଼ା ଶେଷ କରି ଭଦ୍ରକ ହାଇସ୍କୁଲରେ ପଢ଼ିବାକୁ ଗଲେ । ସେ ଛାତ୍ର ଜୀବନରୁ ଖୁବ୍ ସାହସୀ ଥିଲେ । ମନଯୋଗ ସହକାରେ ପାଠ ପଢ଼ି ସେ ଶ୍ରେଣୀରେ ପ୍ରଥମ ବା ଦ୍ୱିତୀୟ ହେଉଥିଲେ ।

ହରେକୃଷ୍ଣ ମହତାବ ରେଭେନ୍ସା କଲେଜରେ ଆଇ.ଏସ୍‌ସି ପଢ଼ିବା ସମୟରେ ନବକୃଷ୍ଣ ଚୌଧୁରୀ, ପ୍ରହ୍ଲାଦ ସାହୁଙ୍କ ସହ ତାଙ୍କର ଘନିଷ୍ଠ ପରିଚୟ ହୋଇଥିଲା । ଆନି ବେଶାନ୍ତଙ୍କ ସମ୍ପାଦନାରେ ପ୍ରକାଶ ପାଉଥିବା 'ନିଉ ଇଣ୍ଡିଆ' ଦୈନିକ ସମ୍ବାଦପତ୍ର ପଢ଼ି ମହତାବ ନିଜକୁ ସ୍ୱାଧୀନ ଚିନ୍ତକ ବ୍ୟକ୍ତି ଭାବରେ ଗଢ଼ିବାକୁ ଚାହୁଁଥିଲେ । ନିଜ ମେସ୍‌ରେ ସେ 'ମଳୟ' ନାମକ ଏକ ମାସିକ ପତ୍ରିକା ଓ 'ଡଷ୍ଟବିନ୍' ନାମକ ଏକ ସାପ୍ତାହିକ ଇଂରାଜୀ ହାତଲେଖା

ପତ୍ରିକା ପ୍ରକାଶ କଲେ । ମହତାବ ଆଇ.ଏସ୍‌ସି. ପାସ୍ କରିବା ପରେ ସଂସ୍କୃତ ଓ ଅର୍ଥନୀତି ବିଷୟ ନେଇ ବି.ଏ. ପଢ଼ିଲେ । ସେହି ସମୟରେ କଟକ ସହରରେ ପୋଲିସ ଜୁଲୁମ୍ କରୁଥିଲେ । ସେ ବିଷୟରେ ଇଂରାଜୀରେ ଲେଖି ମହତାବ ସମ୍ବାଦପତ୍ରରେ ପ୍ରକାଶ କରୁଥିଲେ । ୧୯୧୮ ମସିହାରେ କଟକରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀରେ ଡକ୍ଟର ମହତାବ ସ୍ୱେଚ୍ଛାସେବକ ଭାବରେ କାର୍ଯ୍ୟ କରିଥିଲେ । ମଧୁବାବୁଙ୍କ ଚିନ୍ତାଧାରା, ସାହସ ଓ ଉତ୍ସାହ ବାଣୀରେ ମହତାବ ଅନୁପ୍ରାଣିତ ହେଲେ ।

୧୯୨୦ ମସିହା ପ୍ରାରମ୍ଭରେ 'ଭାରତୀ ମନ୍ଦିର' ପାଠାଗାରରେ ସେ ଅଂଶ ଗ୍ରହଣ କଲେ । ଏହି ଅନୁଷ୍ଠାନ ତରଫରୁ କଲିକତା ଓ ନାଗପୁର ଯାଇ ଭାରତୀୟ ରାଜନୀତି ସମ୍ବନ୍ଧରେ ସେ ଅନେକ କିଛି ଜାଣି ପାରିଲେ । ଏହାପରେ କଂଗ୍ରେସ ସଂଗଠନ ପକ୍ଷରୁ ଡାକ୍ତର କୃଷ୍ଣ ପ୍ରସାଦଙ୍କ ଘରେ ରହି ସେ ବାଲେଶ୍ୱରରେ ଏକ 'ସ୍ୱରାଜ୍ୟ ମନ୍ଦିର' ଗଠନ କଲେ । ଡକ୍ଟର ମହତାବ ୧୯୨୧ ମସିହା ନଭେମ୍ବର ୧୭ ତାରିଖରେ ବିଦେଶୀ ଦ୍ରବ୍ୟ ବର୍ଜନ ପାଇଁ ପିକେଟିଂ କରି ପ୍ରଥମ ଥର ପାଇଁ ଗିରଫ ହୋଇ ୧୫ ଦିନ କାରାବରଣ କଲେ । ତାଙ୍କର ଦେଶପ୍ରେମ ଓ ସାହସ ପାଇଁ ଉତ୍କଳ ପ୍ରଦେଶ କଂଗ୍ରେସ କାର୍ଯ୍ୟକାରୀ କମିଟିର ସଭ୍ୟ ଭାବରେ ତାଙ୍କୁ ମନୋନୀତ କରାଯାଇଥିଲା । କନିକା ଆନ୍ଦୋଳନରେ ଭାଗ ନେବା ଯୋଗୁ ୧୯୨୨ ମସିହା ଜୁଲାଇ ମାସ ୧୦ ତାରିଖରେ ବାଲେଶ୍ୱର ଜିଲ୍ଲା ଜଜ୍ କୋର୍ଟରେ ବିଚାର ହୋଇ ଏକ ବର୍ଷ ସଶ୍ରମ କାରାଦଣ୍ଡରେ ସେ ଦଣ୍ଡିତ ହୋଇଥିଲେ । ଜେଲ୍‌ରେ ରହି କନିକା ଅତ୍ୟାଚାର ବିଷୟ ଶୁଣି ସେ ଦୁଃଖିତ ହେଲେ । ଜେଲ୍‌ରେ ଥାଇ 'ଅଜବ ଦୁନିଆ' ନାମକ ଏକ ଉପନ୍ୟାସ ଓ ଇଂରାଜୀରେ 'ଫ୍ରି ଥିଙ୍କିଙ୍ଗ୍' ନାମକ ଏକ ପୁସ୍ତକ ଲେଖିଲେ । କଟକରେ ଥିବା ସମୟରେ 'ପ୍ରଜାତନ୍ତ୍ର' ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରିଥିଲେ । ଏହି ପତ୍ରିକାର ମୁଖ୍ୟ ଲକ୍ଷ୍ୟ ଥିଲା ଗାନ୍ଧୀନୀତିର ପ୍ରଚାର ଓ ପ୍ରସାର । ମହତାବ ବାଲେଶ୍ୱର ଜିଲ୍ଲା ବୋର୍ଡ଼ ନିର୍ବାଚନରେ ଭାଗ ନେଇ କଂଗ୍ରେସ ଦଳର ସିଦ୍ଧାନ୍ତ ଅନୁସାରେ ଚେୟାରମ୍ୟାନ୍ ହେଲେ । ୧୯୨୭ ମସିହାରେ ସେ 'ଆଡ୍‌ଭେଞ୍ଚର' ନାମକ ଏକ ଇଂରାଜୀ ସାପ୍ତାହିକ ପତ୍ରିକା ସ୍ୱରାଜ୍ୟ ମନ୍ଦିରରୁ ପ୍ରକାଶ କଲେ । ତାଙ୍କର 'ପଲାସୀ ଅବସାନେ' ପୁସ୍ତକଟିକୁ ଇଂରେଜ ସରକାର ବାଜ୍ୟାପ୍ତି କରି ଦେଇଥିଲେ । ୧୯୨୯ ମସିହାରେ କଲିକତାରେ ହୋଇଥିବା ସାଇମନ୍ କମିଶନ ବିରୋଧୀ ବିକ୍ଷୋଭରେ ପ୍ରବାସୀ ଓଡ଼ିଆମାନଙ୍କର ନେତୃତ୍ୱ ନେଇଥିଲେ । ୧୯୩୦ ମସିହା ଏପ୍ରିଲ୍ ୧୭ ତାରିଖରେ ଆରମ୍ଭ ହୋଇଥିବା ଇଞ୍ଚୁଡ଼ି ଲବଣ ସତ୍ୟାଗ୍ରହର ନେତୃତ୍ୱ ନେଇ ଗିରଫ ହୋଇ ୧୮ ମାସ କାରାଦଣ୍ଡ ଭୋଗ କରିଥିଲେ । ପାଟନା କ୍ୟାମ୍ପ ଜେଲରେ ଥିବା ସମୟରେ 'ସ୍ୱରାଜ୍ୟ ସାଧନ' ଓ 'ଦଶବର୍ଷର ଓଡ଼ିଶା' ପୁସ୍ତକ ରଚନା କରିଥିଲେ । ଜେଲରୁ ଫେରିବା ପରେ ଅଗରପଡାରେ ଗାନ୍ଧୀକର୍ମ ମନ୍ଦିରର ପ୍ରତିଷ୍ଠା କରି ସୂତାକଟା ଓ ଲୁଗାବୁଣାର ପ୍ରସାର କରାଇଥିଲେ ।

୧୯୩୭ ମସିହାରେ ସେ ନିଜ ବଳିଷ୍ଠ ବ୍ୟକ୍ତିତ୍ୱ ପାଇଁ ପ୍ରଦେଶ କଂଗ୍ରେସର ସଭାପତି ଭାବରେ ନିର୍ବାଚିତ ହୋଇ ପାରିଥିଲେ । ଜାତୀୟ କଂଗ୍ରେସର ସଭାପତି ସୁଭାଷ ଚନ୍ଦ୍ର ବୋଷ ତାଙ୍କୁ କଂଗ୍ରେସ କାର୍ଯ୍ୟକାରୀ ସମିତିର ସଦସ୍ୟ ବାଛିଥିଲେ । ସେ ଗଡଜାତ ଅତ୍ୟାଚାରର ଅନୁଧ୍ୟାନ କମିଟିର ଅଧ୍ୟକ୍ଷ ପଦରେ ରହିଥିଲେ ।

ଡଃ ମହତାବ ୧୯୪୨ ମସିହାରେ ଭାରତଛାଡ ସଂଗ୍ରାମରେ ଯୋଗଦେଇ ଗିରଫ ହୋଇଥିଲେ । ଅହମ୍ମଦ ନଗର ଫୋର୍ଟରେ ବନ୍ଦୀ ଥିବା ସମୟରେ ନେହେରୁ ଓ ପଟେଲଙ୍କ ସହିତ ତାଙ୍କର ସମ୍ପର୍କ ଦୃଢ଼ ହୋଇଥିଲା ଓ ନେହେରୁଙ୍କ ଉତ୍ସାହରେ ସେ 'ଓଡ଼ିଶା ଇତିହାସ' ଲେଖିଥିଲେ ।

୧୯୪୬ ମସିହାରେ ଡକ୍ଟର ମହତାବ ପ୍ରଧାନମନ୍ତ୍ରୀ ଭାବରେ ଆଧୁନିକ ଓଡ଼ିଶା ନିର୍ମାଣର ମୂଳଦୁଆ ସ୍ଥାପନ କରିପାରିଥିଲେ । ୧୯୫୦ ମସିହା ମେ ମାସ ୧୨ ତାରିଖ ପର୍ଯ୍ୟନ୍ତ ମୁଖ୍ୟମନ୍ତ୍ରୀ ରହିବା ପରେ ପଣ୍ଡିତ ନେହେରୁଙ୍କ ଆହ୍ୱାନ କ୍ରମେ ସେ କେନ୍ଦ୍ରରେ କ୍ୟାବିନେଟ୍ ମନ୍ତ୍ରୀ ଭାବରେ ଯୋଗଦେଲେ । ୧୯୫୫ ମସିହାରେ ବମ୍ବେର ରାଜ୍ୟପାଳ ଭାବରେ କାର୍ଯ୍ୟ କଲେ । ୧୯୫୬ ମସିହାରେ ସେ ପୁଣି ଓଡ଼ିଶାର ମୁଖ୍ୟମନ୍ତ୍ରୀ ହୋଇ ରାଜନୀତିରେ ସକ୍ରିୟ ହୋଇଥିଲେ । ୧୯୫୭ ମସିହାରେ ଝାଡଖଣ୍ଡ ଏମ୍.ଏଲ୍.ଏ.ଙ୍କ ସହାୟତାରେ ସରକାର ଗଠନ କଲାପରେ ପରବର୍ତ୍ତୀ ପର୍ଯ୍ୟାୟରେ ଗଣତନ୍ତ୍ର ପରିଷଦର ସହାୟତାରେ ମିଳିତ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ଉତ୍‌ଥାନ ଓ ପତନର ରାଜନୀତିରେ ସେ କେବେ ମଧ ଧୈର୍ଯ୍ୟ ହରାଇ ନଥିଲେ । କେଉଁ ସମୟରେ କ'ଣ କରିବାକୁ ପଡିବ, ତାହା ସେ ଠିକ୍ ଭାବରେ ଜାଣିଥିଲେ । ରାଜନୈତିକ କୌଶଳ ଓ ରାଜନୈତିକ ମାନସାଙ୍କ ତାଙ୍କୁ ଠିକ୍ ଭାବରେ ଜଣାଥିଲା ।

୧୯୬୨ ମସିହାରେ ଲୋକ ସଭାର ସଭ୍ୟ ଭାବରେ ନିର୍ଦ୍ୱନ୍ଦ୍ୱରେ ନିର୍ବାଚିତ ହୋଇଥିଲେ ଏବଂ ୧୯୬୬ରେ ଜନକଂଗ୍ରେସ ନାମରେ ଏକ ନୂତନ ଆଞ୍ଚଳିକ ରାଜନୈତିକ ଦଳ ଗଠନ କରିଥିଲେ । ସେ ତାଙ୍କ ରାଜନୈତିକ ଶତ୍ରୁମାନଙ୍କର ପ୍ରତିଶୋଧ ନେବାରେ ସଫଳ ହୋଇ ସ୍ୱତନ୍ତ୍ର ପାର୍ଟି ସହିତ ମିଳିତ ସରକାର ଗଠନରେ ସହାୟକ ହୋଇଥିଲେ । ୧୯୭୧ ମସିହାରେ ସେ ପୁନର୍ବାର କଂଗ୍ରେସରେ ଯୋଗ ଦେଇଥିଲେ । ତାଙ୍କୁ ଓଡ଼ିଶାର ରାଜନୈତିକ ବିଶ୍ୱକର୍ମା କହିଲେ ଭୁଲ ହେବ ନାହିଁ । ସେ ଭାରତୀୟ ଲୋକଦଳର ସଭ୍ୟ ହେବାର ଦୁଇବର୍ଷ ପରେ ୧୯୭୭-୭୮ ମସିହାରେ ରାଜନୀତିରୁ ଅବସର ନେବା ପାଇଁ ସିଦ୍ଧାନ୍ତ ନେଇଥିଲେ । ସେ ତାଙ୍କ ରାଜନୈତିକ ଜୀବନରେ କୌଣସି ନିର୍ବାଚନରେ ପରାଜିତ ହୋଇ ନାହାନ୍ତି । ଦୈନିକ 'ପ୍ରଜାତନ୍ତ୍ର' ମାଧ୍ୟମରେ ଓଡ଼ିଶାର ଜନସାଧାରଣଙ୍କ ମଧ୍ୟରେ ରାଜନୈତିକ ସଚେତନତା ପ୍ରସାରର ଦିଗ୍‌ଦର୍ଶକ ହୋଇ ପାରିଥିଲେ ।

ଓଡ଼ିଶାର ରାଜନୀତି, ସଂସ୍କୃତି ଓ ସାହିତ୍ୟ ପାଇଁ ଡକ୍ଟର ମହତାବ ଯାହା କରିଯାଇଛନ୍ତି, ଏ ପର୍ଯ୍ୟନ୍ତ କୌଣସି ନେତା ସେପରି କରିପାରି ନାହାନ୍ତି । ତାଙ୍କର 'ଗାଁ ମଜଲିସ୍' ଓଡ଼ିଶା ରାଜନୀତି ଓ ସଂସ୍କୃତିର ପ୍ରତୀକ ଅଟେ । ଡକ୍ଟର ମହତାବ ଇଂରାଜୀ ସମ୍ବାଦପତ୍ର "The Eastern Times" ର ପ୍ରତିଷ୍ଠାତା ସଂପାଦକ ଥିଲେ । ସେ ପ୍ରତ୍ୟକ୍ଷ ଓ ପରୋକ୍ଷରେ ଅନେକ ରାଜନୈତିକ ନେତାଙ୍କୁ ତାଲିମ ଦେଇଥିଲେ । ଆଧୁନିକ ଓଡ଼ିଶାର ସେ ଥିଲେ ନିର୍ମାତା । ହୀରାକୁଦ ନଦୀବନ୍ଧ ଯୋଜନା, ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ, ଦେଶୀୟ ରାଜ୍ୟମିଶ୍ରଣ, ଓଡ଼ିଶାର ହାଇକୋର୍ଟ ପ୍ରତିଷ୍ଠା, ଆକାଶବାଣୀ ପ୍ରତିଷ୍ଠା ଓ ଓଡ଼ିଶା ଲୋକସେବା ଆୟୋଗ ଓ ନୂତନ ରାଜଧାନୀ ନିର୍ମାଣ କ୍ଷେତ୍ରରେ ଡକ୍ଟର ମହତାବଙ୍କ ଅବଦାନକୁ ଓଡ଼ିଶାବାସୀ କେବେ ମଧ ଭୁଲି ପାରିବେ ନାହିଁ । ଓଡ଼ିଶାର ପୁରପଲ୍ଲୀର ଶିଶୁମାନଙ୍କ ମଧରେ ସାଂସ୍କୃତିକ ସଚେତନତା ସୃଷ୍ଟି କରିବା ପାଇଁ 'ମୀନାବଜାର' ପ୍ରତିଷ୍ଠା କରିଥିଲେ । ସାହିତ୍ୟର ବିକାଶ ପାଇଁ 'ଝଙ୍କାର' ଓ 'ମୀନାବଜାର' ମାସିକ ପତ୍ରିକାର ଶୁଭାରମ୍ଭ କରିଥିଲେ । 'ବିଷୁବ ମିଳନ' ଆୟୋଜନ କରି ଏକ ନୂତନ ସାହିତ୍ୟିକ ପରମ୍ପରା ସୃଷ୍ଟି କରି ପାରିଥିଲେ । ପଶ୍ଚିମାଞ୍ଚଳ ଅଭିବୃଦ୍ଧି ପାଇଁ 'ହୀରାଖଣ୍ଡ' ନାମକ ଏକ ଦୈନିକ ସମ୍ବାଦପତ୍ର ପ୍ରକାଶ କରାଇଥିଲେ ।

ହରେକୃଷ୍ଣ ମହତାବଙ୍କ 'ଓଡ଼ିଶା ଇତିହାସ' ପୁସ୍ତକ ନିମନ୍ତେ ଆନ୍ଧ୍ର ବିଶ୍ୱବିଦ୍ୟାଳୟ ତରଫରୁ ତାଙ୍କୁ ପିଏଚ୍.ଡି. ପ୍ରଦାନ କରାଯାଇଥିଲା । ସାହିତ୍ୟ ଓ ରାଜନୀତି ପ୍ରତି ଥିବା ତାଙ୍କର ଅବଦାନ ଯୋଗୁ ସାଗର ବିଶ୍ୱବିଦ୍ୟାଳୟ ତରଫରୁ ତାଙ୍କୁ ସମ୍ମାନ ସୂଚକ ଡକ୍ଟରେଟ୍ ଡିଗ୍ରୀ ଦିଆଯାଇଥିଲା । ସେ ପ୍ରାୟ ୩୦ ଖଣ୍ଡ ବହି ଲେଖିଛନ୍ତି । 'ଗାଁ ମଜଲିସ୍' ପୁସ୍ତକ ପାଇଁ ଡକ୍ଟର ମହତାବ ୧୯୮୩ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ଲାଭ କରିଥିଲେ । ୧୯୮୭ ମସିହା ଜାନୁଆରୀ ମାସ ୨ ତାରିଖରେ ୮୮ ବର୍ଷ ବୟସରେ ଓଡ଼ିଶାର ଅଗଣିତ ନରନାରୀଙ୍କୁ ଶୋକ ସାଗରରେ ଉଷାଇ ଦେଇ ସେ ଚାଲିଗଲେ । ଡକ୍ଟର ମହତାବ ବାସ୍ତବରେ ଓଡ଼ିଶା ରାଜନୀତିର ଭୀଷ୍ମ ପିତାମହ ଓ ଧ୍ରୁବତାରା ।

*ଅଧ୍ୟାପକ,*
*ରାଜନୀତି ବିଜ୍ଞାନ ବିଭାଗ*
*ନାକଟି ଦେଉଳ ମହାବିଦ୍ୟାଳୟ, ନାକଟିଦେଉଳ*



# ଓଡ଼ିଆ ସାହିତ୍ୟ ଓ ସଂସ୍କୃତିର ମହାନ ପୃଷ୍ଠପୋଷକ; ହରେକୃଷ୍ଣ ମହତାବ

## ଡକ୍ଟର ହେମନ୍ତ ମହାପାତ୍ର

ଗୋଟିଏ ଜାତିର ଉତ୍‌ଥାନ ଓ ପରିପୁଷ୍ଟି ପାଇଁ ସାଂସ୍କୃତିକ ସଚେତନତା ଅତ୍ୟନ୍ତ ଆବଶ୍ୟକ । ସାଂସ୍କୃତିକ ସଚେତନତା ଜାତିର ଆତ୍ମପ୍ରତ୍ୟୟ ବଢ଼ାଏ, ଅସାଧ ସାଧନ କରିବା ପାଇଁ ଉଦ୍ଦୀପନା ଓ ପ୍ରେରଣା ଯୋଗାଇ ଦିଏ । ନିଜର ଭାଷା, ସାହିତ୍ୟ, ଐତିହ୍ୟ ଓ ସଂସ୍କୃତି ପ୍ରତି ଅନୁରାଗ ଗୋଟିଏ ସୁସ୍ଥ ଓ ଅଗ୍ରଗାମୀ ଜାତିର ଲକ୍ଷଣ । ଦୃଢ଼ ମୂଳଦୁଆ ଜାତିକୁ ସୌଷ୍ଠବ ହେବାର ଶକ୍ତି ପ୍ରଦାନ କରେ ଓ ସ୍ୱାଭିମାନୀ କରାଏ । ଗୋଟିଏ ସ୍ୱାଭିମାନୀ ଜାତି କେବେ ହୀନମନା ହୁଏ ନାହିଁ, ବରଂ ଜାତିଗତ ସ୍ୱାଭିମାନକୁ ବଜାୟ ରଖିବା ପାଇଁ ସେ କର୍ମ ଚଞ୍ଚଳ ରହେ । ଏସବୁ କଥା ମର୍ମେ ମର୍ମେ ଉପଲବ୍ଧି କରିଥିଲେ ମଣିଷର ପ୍ରକୃତି, ଦୋଷ ଦୁର୍ବଳତା ଅକ୍ଲେଶରେ ଠଉରେଇ ପାରୁଥିବା ହରେକୃଷ୍ଣ ମହତାବ । ସେ ଥିଲେ ଜନତାର ନେତା । ଆକାଶରୁ ତୋଳିଆଣି ଜନତାଙ୍କ ଉପରେ ତାଙ୍କୁ ଲଦି ଦିଆଯାଇ ନଥିଲା । ସାଧାରଣ ଜନତାର ସମର୍ଥନ ଓ ଆନୁଗତ୍ୟ ଥିଲା ତାଙ୍କର ରାଜନୈତିକ ପୁଞ୍ଜି । ତେଣୁ ସାଧାରଣ ଓଡ଼ିଆମାନଙ୍କୁ ସେମାନଙ୍କର ଦ୍ରୁତ ଗୌରବ ଜଣାଇ ସେମାନଙ୍କୁ ଜାଗରୂକ କରିବା ଥିଲା ତାଙ୍କ କର୍ତ୍ତବ୍ୟ । ସାଧାରଣ ଲୋକଙ୍କ ଭାଷା ସାହିତ୍ୟକୁ ସମୃଦ୍ଧ କରି ସେମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିବା ଥିଲା ତାଙ୍କର ଅଧିକାର । ସେ ଜାଣିଥିଲେ ନିଜର ଭାଷା, ନିଜର ଐତିହ୍ୟ, ନିଜର ସଂସ୍କୃତି ପ୍ରତି ଲୋକମାନଙ୍କର ଭାବ ପ୍ରବଣତାର କଥା ।

ତେଣୁ ରାଜନୀତି ସହିତ ସାହିତ୍ୟ ଥିଲା ତାଙ୍କ ଜୀବନଧାରାର ଅଂଶ ବିଶେଷ । ସ୍ନାତକ ପରୀକ୍ଷା ଦେବା ପୂର୍ବରୁ ସେ ରାଜନୀତିରେ ଯୋଗ ଦେଲେ । ମହାତ୍ମା ଗାନ୍ଧିଙ୍କ ଆହ୍ୱାନରେ ଅସହଯୋଗ ଆନ୍ଦୋଳନ ସମୟରେ ଓଡ଼ିଶାରୁ ପ୍ରମୁଖ ଭୂମିକା ଗ୍ରହଣ କଲେ । ୧୯୨୦ ରୁ ୧୯୮୬ ଏ ଦୀର୍ଘ ୬୭ ବର୍ଷ ସେ ରାଜନୀତିରେ ହିଁ ଥିଲେ । ଅର୍ଥାତ୍ ତାଙ୍କୁ

ଯେତେବେଳେ ୨୧ ବର୍ଷ ବୟସ, ସେ ସ୍ୱାଧୀନତା ସଂଗ୍ରାମରେ ଯୋଗଦେଲେ ଏବଂ ମୃତ୍ୟୁ ପର୍ଯ୍ୟନ୍ତ ରାଜନୀତିରେ ରହିଲେ । କୁହାଯାଏ ଶେଷ ବେଳକୁ ସେ ରାଜନୀତିରୁ ସନ୍ୟାସ ନେଇଥିଲେ । କିନ୍ତୁ ନା, ହୁଏତ ନିଜେ ରାଜତ୍ୱ କରିବାର ଅଭିଳାଷ ତାଙ୍କର ଅବଦମିତ ହୋଇଥାଇ ପାରେ, କିନ୍ତୁ ରାଜନୀତିକୁ ନିୟନ୍ତ୍ରଣ କରିବା, ରାଜ୍ୟ ଗଢ଼ିବା କାର୍ଯ୍ୟ ସେ ଶେଷ ପର୍ଯ୍ୟନ୍ତ ଜାରିରଖିଥିଲେ । କିନ୍ତୁ ତା' ସହିତ ସେ ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିର ପ୍ରସାର ଓ ସୁରକ୍ଷା ପାଇଁ କେବେ ବି ତାଙ୍କର ପ୍ରଚେଷ୍ଟାର ମାତ୍ରା କମେଇ ନଥିଲେ ।

ହରେକୃଷ୍ଣ ମହତାବ ସାହିତ୍ୟିକ ଓ ସାମ୍ବାଦିକତାର ଜୀବନ ଆରମ୍ଭ କରିଥିଲେ ବିଂଶ ଶତାବ୍ଦୀର ୩ୟ ଦଶକରେ ଏବଂ ତାଙ୍କ ନିଜ ଜୀବନର ୩ୟ ଦଶକରେ । ୧୯୨୪ ମସିହାରେ ସେ କଟକରୁ ବାଲେଶ୍ୱରକୁ ସାପ୍ତାହିକ ପତ୍ରିକା 'ପ୍ରଜାତନ୍ତ୍ର' କାର୍ଯ୍ୟାଳୟ ଉଠାଇ ଆଣିଲେ । ସମ୍ପାଦନା ମଧ୍ୟ କଲେ । ଓଡ଼ିଶାର ସାମାଜିକ ସମସ୍ୟା, ବିଶେଷ କରି ଦରିଦ୍ର କୃଷକମାନଙ୍କର ଅବସ୍ଥା ସହିତ ଗାନ୍ଧିବାର୍ତ୍ତା ଲୋକମାନଙ୍କ ପାଖରେ ପହଞ୍ଚାଇବା ଥିଲା ଏହି ପତ୍ରିକାର ମୂଳ ଲକ୍ଷ୍ୟ । 'ପ୍ରଜାତନ୍ତ୍ର'ର ଜମିଦାର ବିରୋଧୀ ଓ ବ୍ରିଟିଶ ବିରୋଧୀ ଲେଖାପାଇଁ ୧୯୩୮ ମସିହାରେ 'ପ୍ରଜାତନ୍ତ୍ର' ଛପାଖାନାକୁ ବ୍ୟାଜ୍ୟାପ୍ତି କରିଦିଆଗଲା ଓ ଏହାର ପ୍ରକାଶନ ମଧ୍ୟ ବନ୍ଦ କରି ଦିଆଗଲା । ଏହି 'ପ୍ରଜାତନ୍ତ୍ର' ଏକ ଦୈନିକ ଖବରକାଗଜ ଭାବରେ କଟକରୁ ଆତ୍ମପ୍ରକାଶ କଲା ୧୯୪୭ ମସିହା ଅଗଷ୍ଟ ୮ ତାରିଖଠାରୁ । ମହତାବ ୧୯୪୬ ମସିହାଠାରୁ ୧୯୫୦ ମସିହା ପର୍ଯ୍ୟନ୍ତ ପର୍ଯ୍ୟାୟ କ୍ରମେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ଥିଲେ । ଏହି ସମୟରେ ସେ ପ୍ରଜାତନ୍ତ୍ର ପ୍ରଚାର ସମିତି ପ୍ରତିଷ୍ଠା କଲେ । ଏହି ସମିତି ତରଫରୁ ପ୍ରଜାତନ୍ତ୍ର, ଝଙ୍କାର ଓ ମୀନାବଜାର ପ୍ରକାଶ ପାଇଲା ଏବଂ ବିଷୁବମିଳନ ନାମରେ ଲେଖକ ଲେଖକମାନଙ୍କର ଏକ ବାର୍ଷିକ ସମ୍ମିଳନୀ ପ୍ରଜାତନ୍ତ୍ର ପରିସରରେ ଅନୁଷ୍ଠିତ ହେଲା । ନିଜେ ହରେକୃଷ୍ଣ ମହତାବ ଥିଲେ ଜଣେ ସୁଲେଖକ । ସରଳ ଓ ନିରୋଳା କଥିତ ଓଡ଼ିଆ ଭାଷାରେ ଲେଖିବାରେ ସେ ସିଦ୍ଧହସ୍ତ ଥିଲେ । ଇଂରାଜୀ ଭାଷାରେ ଲେଖିବାରେ ମଧ୍ୟ ତାଙ୍କର ସମକକ୍ଷ ଦକ୍ଷତା ଥିଲା । ଇଂରାଜୀ ଓ ଓଡ଼ିଆ ଭାଷାରେ ସେ ସର୍ବମୋଟ ୨୩ଟି ବହି ଲେଖିଛନ୍ତି । ଏଥିରେ ଅଛି ଛ'ଖଣ୍ଡ ଉପନ୍ୟାସ ଓ ଗୋଟିଏ ଏକାଙ୍କିକା ସଂକଳନ । ତାଙ୍କର ଆତ୍ମଜୀବନୀ ସାଧନାର ପଥେ ଓ ସ୍ତମ୍ଭଲେଖା ଗାଁ ମଜଲିସ, ସରଳ ସାବଲୀଳ ସାହିତ୍ୟ ସୃଷ୍ଟିର ଗୋଟିଏ ଗୋଟିଏ ଅନବଦ୍ୟ ନମୁନା । 'ପ୍ରଜାତନ୍ତ୍ର'ରେ ତାଙ୍କର ସ୍ତମ୍ଭଲେଖା ଗାଁ । ମଜଲିସ୍‌କୁ ସଂକଳିତ କରି ପ୍ରକାଶିତ ପୁସ୍ତକକୁ ୧୯୮୩ ମସିହରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ମିଳିଥିଲା । ତାଙ୍କର ସାହିତ୍ୟ କୃତି ବିଷୟରେ ଆଲୋଚନା ଓ ସମାଲୋଚନା କରିବାର ସାମର୍ଥ୍ୟ ଏ ଲେଖକର ନାହିଁ । ସେଥିପାଇଁ ଏ ପ୍ରବନ୍ଧ ମଧ୍ୟ ଅଭିପ୍ରେତ ନୁହେଁ । ତେବେ ସାହିତ୍ୟ ପ୍ରତି ତାଙ୍କର ଅନୁରକ୍ତି ହିଁ ବଡ଼ କଥା । ଆଗାମୀ ସମୟର ଅନେକ

ବଡ଼ ବଡ଼ ସାହିତ୍ୟିକ ତାଙ୍କରି ପ୍ରେରଣା ଓ ଝଙ୍କାର ମାଧ୍ୟମରେ ଲୋକ ଲୋଚନକୁ ଆସିଛନ୍ତି । ତାଙ୍କରି ଯୋଗୁଁ ଓଡ଼ିଆ ସାହିତ୍ୟ ଏକ ପରମ୍ପରାରେ ପରିଣତ ହୋଇଛି । ତାଙ୍କରି ଯୋଗୁଁ ଓଡ଼ିଆ ସାହିତ୍ୟ ଦେଶ ବିଦେଶରେ ଏକ ସମ୍ମାନଜନକ ସ୍ଥିତିରେ ପହଞ୍ଚିପାରିଛି ଏବଂ ସାହିତ୍ୟ ଏକ ସମ୍ମାନଜନକ ବୃତ୍ତି ନୁହେଁ, ଏକ ସମ୍ମାନଜନକ ସାଧାନାରେ ପରିଣତ ହୋଇଛି । ଓଡ଼ିଶାର ରାଜନୀତି, ସାମାଜିକ ସ୍ଥିତି ଓ କିଛି ପରିମାଣରେ ନିଛକ ସାହିତ୍ୟକୁ ଅଣଓଡ଼ିଆମାନଙ୍କ ମଧ୍ୟରେ ପରିବେଷଣ କରିବାକୁ ସେ "The Eastern Times" ନାମକ ଗୋଟିଏ ଇଂରାଜୀ ଦୈନିକ ମଧ ଶୁଭାରମ୍ଭ କରିଥିଲେ । ପାଠକୀୟ ସହାନୁଭୂତି ଲାଭ କରିନପାରି ପରେ ଏହା ଏକ ସାପ୍ତାହିକ କାଗଜରେ ପରିଣତ ହୋଇଛି । ଭାଷା, ସାହିତ୍ୟ ଓ ଧର୍ମ ବିଶ୍ୱାସ ଶକ୍ତି ସମ୍ପର୍କରେ ମହତାବ ସଚେତନ ଥିଲେ । ଇତିହାସର ଅନୁଭୂତିକୁ ପାଥେୟ କରି ସେ କହିଥିଲେ-

''ଭାଷା ଓ ଧର୍ମ ବିଶ୍ୱାସକୁ ଭିତ୍ତି କରି ସମାଜ ଗଠିତ ହୁଏ ଏବଂ ଏହି ସଂଗଠନ ଭୌଗୋଳିକ ଶାସନଗତ ଅନ୍ୟ କୌଣସି-ପ୍ରତିବନ୍ଧକ ସ୍ୱୀକାର କରେ ନାହିଁ । ପୃଥିବୀର ଇତିହାସରେ ବହୁ ସମାଜ ଓ ସଭ୍ୟତା ଲୋପ ପାଇଯାଇଛି । ଏହି ଭାରତ ବର୍ଷରେ ମଧ ସ୍ୱତନ୍ତ୍ର ସମାଜ ଲୋପ ପାଇଯାଇ ଅନ୍ୟ ସମାଜମାନଙ୍କ ସହିତ ମିଳିଯାଇ ନୂତନ ସମାଜ ଗଠନ କରିଛନ୍ତି । କିନ୍ତୁ ଓଡ଼ିଆ ସମାଜ ସମସ୍ତ ବାଧାର ସମ୍ମୁଖୀନ ହୋଇ ବି ନିଜର ସ୍ୱତନ୍ତ୍ୟ ରକ୍ଷା କରିଆସିଛି । ଏହାର କାରଣ ଓଡ଼ିଆ ଭାଷା ଓ ସାହିତ୍ୟର ସବଳତା ଏବଂ ଓଡ଼ିଆ ଧର୍ମ ବିଶ୍ୱାସର କେନ୍ଦ୍ର ଶ୍ରୀ ଜଗନ୍ନାଥ ।''

ଓଡ଼ିଶାର ଐତିହ୍ୟ ଓ ସଂସ୍କୃତି ସମ୍ପର୍କରେ ବେଶ ସଚେତନ ଥିଲେ ହରେକୃଷ୍ଣ ମହତାବ । ଇତିହାସ ରାଜନୀତିର ପ୍ରୟୋଗଶିଳା ପରୀକ୍ଷାଗାର। ଅନେକ ରାଜନୈତିକ ବ୍ୟବସ୍ଥାର ପରୀକ୍ଷା ନିରୀକ୍ଷା ହୋଇଛି ଇତିହାସରେ । ମହାମହା ମାନୀ, ଜ୍ଞାନୀ, ଅଭିମାନୀ, ପରାକ୍ରମୀଙ୍କର ଉତ୍‌ଥାନ ପତନ ଦେଖିଛି ଏହି ଇତିହାସ । ଜଣେ ସଫଳ ରାଜନେତା ଏସବୁ ରାଗ ବିରାଗ ସହିତ ପରିଚିତ ହେବା ଦରକାର । ସଦା ଅନିସନ୍ଧିତ୍ସୁ ମହତାବ ଇତିହାସର ଜଣେ ଅନୁରାଗୀ ଓ ଚିନ୍ତାଶୀଳ ଛାତ୍ର ଥିଲେ । ତେବେ ପରିସ୍ଥିତିରେ ପଡ଼ି ସେ ଜଣେ ଐତିହାସିକ ହେଲେ । ୧୯୪୨-ମସିହା କଥା । ପଣ୍ଡିତ ଜବାହାରଲାଲ୍ ନେହେରୁ, ଆସଫ ଅଲ୍ଲି, ମୌଲାନା ଆବୁଲ କାଲାମ ଆଜାଦ୍, ଆଚାର୍ଯ୍ୟ କୃପାଳିନୀ, ଆଚାର୍ଯ୍ୟ ନରେନ୍ଦ୍ର ଦେବ ପ୍ରମୁଖଙ୍କ ସହିତ ହରେକୃଷ୍ଣ ମହତାବ ଅହମ୍ମଦନଗର ଦୁର୍ଗରେ ବନ୍ଦୀ ଥାଆନ୍ତି । ଦିନେ ଜବାହାରଲାଲ ମହତାବଙ୍କୁ ଏଡ୍‌ୱାଡ଼ ଥମ୍‌ସନଙ୍କ ଲିଖିତ "The Beginning of the Indian Princes" ନାମକ ଏକ ଇତିହାସ ବହି ଦେଖାଇଲେ । ଏଥିରେ ଶ୍ରୀ ଜଗନ୍ନାଥ ଓ ଶ୍ରୀକ୍ଷେତ୍ର ଉପରେ କେତେକ ବିକୃତି ଅଣଐତିହାସିକ ବିବରଣୀ ସ୍ଥାପ ପାଇଥିଲା । ଏଥିରେ ମହତାବ ମର୍ମାହତ ହେଲେ । ଥମସନଙ୍କ ଅଜ୍ଞାନତା ପାଇଁ ବ୍ୟଥିତ ହେଲେ । କିନ୍ତୁ ଏହାକୁ ଅମୂଳକ ବୋଲି କହିଦେବା ଭଳି ପ୍ରାମାଣିକ ତଥ୍ୟ

ମଧ୍ୟ ତାଙ୍କ ପାଖରେ ନଥିଲା । ସେତେବେଳେ ଓଡ଼ିଶାର କୌଣସି ପ୍ରାମାଣିକ ଇତିହାସ ଗ୍ରନ୍ଥ ନଥିଲା- ଯାହା ଦ୍ୱାରା କି ଷ୍ଟର୍ଲିଂ ଅମସନଙ୍କ ମନ୍ତବ୍ୟକୁ କାଟିଦେଇ ହେବ । ତେବେ ନୀରବରେ ଏକଥା ହଜମ କରିଦେବା ଲୋକ ମହତାବ ନଥିଲେ । ସେହିଦିନଠାରୁ ସେ ମନନଶୀଳତାର ସହିତ ମିଳୁଥିବା ସମସ୍ତ ଇତିହାସ ବହିକୁ ପଢ଼ିବାକୁ ଆରମ୍ଭ କଲେ । ଉପଲବ୍ଧ ମୂଳଉତ୍ସ ସହିତ ପୁସ୍ତକରେ ପ୍ରଦତ୍ତ ବିବରଣୀକୁ ପରଖିଲେ । ଇତିହାସରୁ ସେ କଥନିକା, କାହାଣୀ ଓ କିମ୍ବଦନ୍ତୀକୁ ଅଲଗା କଲେ । ତାଙ୍କର ଏହି ପ୍ରଚେଷ୍ଟାର ଆତ୍ମସ୍ୱରୂପ ଆତ୍ମପ୍ରକାଶ କଲା ଓଡ଼ିଶା ଇତିହାସ ଓ "History of Orissa" । ମହତାବଙ୍କ ଏହି ପୁସ୍ତକ ପରବର୍ତ୍ତୀ ସମୟରେ ଓଡ଼ିଆ ଇତିହାସ ସବୁଠାରୁ ଗ୍ରହଣୀୟ ପୁସ୍ତକରେ ପରିଣତ ହେଲା ।

କେବଳ ଯେ ଇତିହାସ ପାଇଁ ତାଙ୍କର ଏତିକି ଅବଦାନ ତା' ନୁହେଁ, ଓଡ଼ିଶାର ଐତିହାସିକ ଗବେଷଣାର ସେ ହେଉଛନ୍ତି ଭୀଷ୍ମ ପିତାମହ । ସେ ଜଣେ ଐତିହାସିକ ଭାବରେ କେତେ ସଫଳ କେତେ ବିଫଳ ଏଠାରେ ସେ ଆଲୋଚନା ନିଷ୍ପ୍ରୟୋଜନ । ତେବେ ଓଡ଼ିଶାରେ ଇତିହାସ ଗବେଷଣାକୁ ସେ ଯେତେ ପ୍ରୋତ୍ସାହନ ଯୋଗାଇଛନ୍ତି ସେତେକ ନଥିଲେ ଆଜିର ଓଡ଼ିଆ ଐତିହାସିକମାନେ ଯେ କି ଅବସ୍ଥାରେ ଥାଆନ୍ତେ ତାହା କହିବା ମୁସ୍କିଲ । ତାଙ୍କର ପ୍ରଚେଷ୍ଟା ପରେ ବି ତ ଓଡ଼ିଶା ଭାରତ ଇତିହାସରେ ତା'ର ନ୍ୟାଯ୍ୟଦାବି ହାସଲ କରିପାରିଲା ନାହିଁ- ସେ ନଥିଲେ ଓଡ଼ିଶା ବୋଲି ଗୋଟାଏ ପ୍ରଦେଶ କିଛି ଯେ ଐତିହ୍ୟ ଥିଲା ତାହା ବୋଧହୁଏ କେହି ଜାଣିନଥାନ୍ତେ । ଓଡ଼ିଶାର ସାଂସ୍କୃତିକ ତଥା ଐତିହାସିକ ଗୌରବ କେବଳ ଶ୍ରୀଜଗନ୍ନାଥଙ୍କ ସହିତ ସୀମାବଦ୍ଧ ଥାଆନ୍ତା । ସେଦିନ ଥମସନ ଯେଉଁ କଥା ଶ୍ରୀ ଜଗନ୍ନାଥଙ୍କ ଉପରେ ଲେଖିଥିଲେ, ତାହା ହିଁ ସତ ବୋଲି ଆଜି ପିଲାମାନେ ପଢୁଥାଆନ୍ତେ । ଶ୍ରୀକ୍ଷେତ୍ରକୁ ଥମସନ କ'ଣ ଲେଖିଥିଲେ ଜାଣନ୍ତି ? ଲେଖିଥିଲେ :-

"Notorious shrines of Jagannath, the uncouth temple where an in comprehensible people reverenced ugliness as the personification of divine attribute and Brahminism seem to flaunt its differences from all other religions of the modern world".

ଓଡ଼ିଆମାନଙ୍କୁ ତାଙ୍କ ଜାତୀୟ ଦେବତାଙ୍କୁ କରାଯାଇଥିବା ଏହି ଅପମାନକୁ ମୁଣ୍ଡପାତି ସହିବାକୁ ପଡ଼ିଥାନ୍ତା । ଯଦି ମହତାବ History of Orissa ଲେଖିନଥାନ୍ତେ । ସେ ଜାଣିଥିଲେ ଓଡ଼ିଶାର ସଠିକ ଇତିହାସ ପ୍ରଣୟନ କରିବା ଜଣେ ଅଧେକର କାମ ନୁହେଁ । ସେଥିପାଇଁ ଓଡ଼ିଶାରେ ସେ ଐତିହାସିକ ଗବେଷଣା ପାଇଁ ଭିତ୍ତିଭୂମି ପ୍ରତିଷ୍ଠା କରିଥିଲେ । ତାଙ୍କରି ପ୍ରଚେଷ୍ଟାରେ ୧୯୪୯ ମସିହାରେ ଭାରତୀୟ ଇତିହାସ କଂଗ୍ରେସର ଦ୍ୱାଦଶ ଅଧିବେଶନ କଟକର ରେଭେନ୍ସା କଲେଜରେ ଅନୁଷ୍ଠିତ ହେଲା । ଏହା ସହିତ ସେଇଠି ଅନୁଷ୍ଠିତ ହେଲା । Indian Historical Record Commissionର ଏକ ସ୍ୱତନ୍ତ୍ର

ଅଧିବେଶନ । ଭାରତୀୟ ଇତିହାସ କଂଗ୍ରେସର ଏହି କଟକ ଅଧିବେଶନକୁ ଯୋଗ ଦେବାକୁ ଆସିଥିବା ବିଶିଷ୍ଟ ଐତିହାସିକମାନଙ୍କ ମଧ୍ୟରେ ଥିଲେ ରମେଶ ଚନ୍ଦ୍ର ମଜୁମ୍‌ଦାର, ଆର.ପି. ତ୍ରିପାଠୀ, ବିଶେଶ୍ୱର ପ୍ରସାଦ, କେ.କେ.ଦତ୍ତ, କେ.ଅଲଟାକର, ନନ୍ଦଲାଲ ଚାଟାର୍ଜୀ, କ୍ୟୁ. ଆର. କାନୁନଗୋ ଓ ଡି.ସି. ସରକାର । ସେତେବେଳେ ଇତିହାସ ଗବେଷଣାରେ ଓଡ଼ିଆମାନେ ଶିଶୁ ପଦବାଚ୍ୟ ଥିଲେ । ଏହି ଜାତୀୟ ସମ୍ମିଳନୀ ଓଡ଼ିଶାର ଆଗ୍ରହୀ ଇତିହାସ ଗବେଷକଙ୍କ ପାଇଁ ଯଥେଷ୍ଟ ପ୍ରେରଣା ପ୍ରଦାନ କରିଥିଲା । ପରେ ଏଥିପାଇଁ ମହତାବ ସମସ୍ତ ସୁବିଧା ସୁଯୋଗ ଯୋଗାଇ ଦେଇଥିଲେ । ତାଙ୍କରି ପ୍ରଚେଷ୍ଟାରେ ଯଥାଶୀଘ୍ର ପ୍ରତିଷ୍ଠା ହେଲା ଓଡ଼ିଶା ରାଜ୍ୟ ଅଭିଲେଖାଗାର, ଓଡ଼ିଆ ରାଜ୍ୟ ସଂଗ୍ରହାଳୟ ଓ ରାଜ୍ୟ ପତ୍ନତତ୍ତ୍ୱ ପ୍ରକୋଷ୍ଠ । ତାଙ୍କର ପୃଷ୍ଠପୋଷକତାରେ ୧୯୫୨ରେ ଆରମ୍ଭ କରାଗଲା, "Orissa Historical Research Journal" । ତାଙ୍କରି ପ୍ରୋତ୍ସାହନରେ କେଦାରନାଥ ମହାପାତ୍ର, ସୁଶୀଳ ଚନ୍ଦ୍ର ଦେ, ସତ୍ୟନାରାୟଣ ରାଜଗୁରୁ, ରମେଶ ଚନ୍ଦ୍ର ମହାପାତ୍ର, ହରୀଶଚନ୍ଦ୍ର ଦାସ, ନୀଳମଣି ମିଶ୍ର, ପରମାନନ୍ଦ ଆଚାର୍ଯ୍ୟ, ସୁଧାକର ପଟ୍ଟନାୟକ ପ୍ରମୁଖ ଇତିହାସ ଗବେଷଣାରେ ମନୋନିବେଶ କଲେ ଓ ଓଡ଼ିଶାର ଇତିହାସ ଓ ସଂସ୍କୃତିର ଅନେକ ତଥ୍ୟ ଲୋକଲୋଚନକୁ ଆଣିବାରେ ସମର୍ଥ ହେଲେ । ଅନ୍ୟାନ୍ୟ ରାଜନୈତିକ କାର୍ଯ୍ୟ, ଶାସନତାନ୍ତ୍ରିକ କାର୍ଯ୍ୟ ମଧ୍ୟରେ ସମୟ ବାହାରେ କରି ସେ Orissa Historical Research Journal ଉପଦେଷ୍ଟା କମିଟିର ସଭାପତି ଓ ପରେ ପତ୍ରିକାର ମୁଖ୍ୟ ସମ୍ପାଦକ ଭାବେ କାର୍ଯ୍ୟ ନିର୍ବାହ କରିଥିଲେ ।

ହରେକୃଷ୍ଣ ମହତାବଙ୍କର ଅନ୍ୟ ଏକ ମହାନକୃତି ହେଉଛି, ଓଡ଼ିଶା ରାଜ୍ୟ ସଂଗ୍ରହାଳୟ । ସଂଗ୍ରାହଳୟକୁ ଜୀବନ୍ତ ଓ କ୍ରମୋନ୍ନତ ଜ୍ଞାନର ଗନ୍ତାଘର ବୋଲି ଅଭିହିତ କରାଯାଏ । ଓଡ଼ିଶାର ଐତିହ୍ୟ ଓ ସଂସ୍କୃତିକୁ ସର୍ବସମକ୍ଷରେ ପ୍ରଦର୍ଶିତ କରିବା ପାଇଁ ଏହା ଥିଲା ଏକ ଅତ୍ୟାବଶ୍ୟକ ମାଧ୍ୟମ । ଓଡ଼ିଶା ରାଜ୍ୟ ସଂଗ୍ରାହଳୟ କେଉଁ ସ୍ଥାନରେ ପ୍ରତିଷ୍ଠା ହେବ- ତାକୁ ନେଇ ଅନେକ ତର୍କ ବିତର୍କ ଚାଲିଲା । ୧୫ ବର୍ଷ ଧରି କୌଣସି ନିଷ୍ପତ୍ତି ହୋଇ ପାରିଲା ନାହିଁ । ଡକ୍ଟର ମହତାବ ମୁଖ୍ୟମନ୍ତ୍ରୀ ଥାଆନ୍ତି । ଏ କାଳକ୍ଷେପଣ ନୀତିରେ ଉତ୍‌କ୍ଷିପ୍ତ ହୋଇ ସେ ଶିକ୍ଷାମନ୍ତ୍ରୀ ଲିଙ୍ଗରାଜ ପାଣିଗ୍ରାହୀଙ୍କୁ ସାଙ୍ଗରେ ଧରି ଭୁବନେଶ୍ୱରର ବିଭିନ୍ନ ଅଞ୍ଚଳ ବୁଲିଲେ । ସିଂହଗଡ଼ ନାମକ ସ୍ଥାନକୁ (ବର୍ତ୍ତମାନ ଯେଉଁଠି ସଂଗ୍ରହାଳୟ ଅଛି) ସେ ରାଜ୍ୟ ସଂଗ୍ରହାଳୟ ପାଇଁ ବାଛିଲେ । ସାଙ୍ଗେ ସାଙ୍ଗେ ପୁରୀ କଲେକ୍ଟରଙ୍କ ପାଖକୁ ବିଶେଷ ବାର୍ତ୍ତାବହ ପଠାଗଲା । ତହସିଲଦାର ଆସିଲେ । ଏକା ଦିନେ ମ୍ୟୁଜିୟମ ପାଇଁ ଜମି ଦଖଲ କରାଗଲା । ଏହା ଥିଲା ଡକ୍ଟର ମହତାବଙ୍କ କାର୍ଯ୍ୟ କରିବାର ଶୈଳୀ । ଥରେ ଗୋଟାଏ ନିଷ୍ପତ୍ତି ନେଲେ ତାକୁ କାର୍ଯ୍ୟକାରୀ ନକରି ଛଡ଼ିବା ଲୋକ ମହତାବ ନୁହନ୍ତି । ୧୯୫୭ରେ ରାଜ୍ୟ ସଂଗ୍ରହାଳୟ ଗୃହର ଶିଳାନ୍ୟାସ କରାଗଲା । ୧୯୬୦ ମସିହାରେ ସ୍ୱରାଷ୍ଟ୍ରମନ୍ତ୍ରୀ ଗୋବିନ୍ଦ ବଲ୍ଲଭ ପନ୍ଥ ଏହାର ଉଦ୍‌ଘାଟନ

କଲେ । ରାଜ୍ୟ ସଂଗ୍ରହାଳୟ ସ୍ଥାନାନ୍ତରିତ ହୋଇ ରେଭେନ୍ସା କଲେଜ ପରିସରରୁ ଭୁବନେଶ୍ୱରର ନବନିର୍ମିତ ଅଟ୍ଟାଳିକାକୁ ଆସିଲା । ଓଡ଼ିଶା ଇତିହାସ, ସାହିତ୍ୟ ସମାଜତତ୍ତ୍ୱ ଗବେଷଣା ଓ ସଂରକ୍ଷଣ ତଥା ସାଂସ୍କୃତିକ ତତ୍ତ୍ୱାନୁସନ୍ଧାନ କ୍ଷେତ୍ରରେ ଏହି ମ୍ୟୁଜିୟମ ପ୍ରମୁଖ ଭୂମିକା ଗ୍ରହଣ କଲା ।

ଲୁପ୍ତପ୍ରାୟ ଓଡ଼ିଶାର କେତେକ ଐତିହ୍ୟ ଓ ସ୍ମୃତିଚିହ୍ନକୁ ଲୋକ ଲୋଚନକୁ ଆଣିବା ପାଇଁ ଡକ୍ଟର ମହତାବ ଅନେକ ପ୍ରକଳ୍ପ କାର୍ଯ୍ୟକାରୀ କରିଥିଲେ । ୧୯୪୮ରେ ତାଙ୍କର ମୁଖ୍ୟମନ୍ତ୍ରିତ୍ୱ ସମୟରେ ଶିଶୁପାଳଗଡ଼ ଠାରେ କେନ୍ଦ୍ରୀୟ ପ୍ରତ୍ନତତ୍ତ୍ୱ ବିଭାଗ ତରଫରୁ ଐତିହାସିକ ଭୂଖୋଦନ କାର୍ଯ୍ୟ ଆରମ୍ଭ କରାଗଲା । ଡକ୍ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଏହି ପ୍ରତ୍ନତାତ୍ତ୍ୱିକ କାର୍ଯ୍ୟର ଦାୟିତ୍ୱ ନେଇଥିଲେ । ଡକ୍ଟର ମହତାବଙ୍କ ଉଦ୍ୟମରେ ୧୯୫୦ରେ ଆତ୍ମପ୍ରକାଶ କଲା Research Section । କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, କେଦାରନାଥ ମହାପାତ୍ର, ପରମାନନ୍ଦ ଆଚାର୍ଯ୍ୟ, ସତ୍ୟନାରାୟଣ ରାଜଗୁରୁ ଓ ସୁଶୀଳ ଚନ୍ଦ୍ର ଦେଙ୍କୁ ଏହି ଗବେଷଣା ବିଭାଗରେ ରଖାଗଲା । ପତ୍ନତତ୍ତ୍ୱ ବିଭାଗର ଏକ ସ୍ୱତନ୍ତ୍ର ସର୍କଲ ଓଡ଼ିଶାରେ ଖୋଲିବା ପାଇଁ ମହତାବ ବାବୁ ମାଉଣ୍ଟବାଟେନ୍ ଦମ୍ପତିଙ୍କୁ ରାଜି କରାଇବାରେ ସକ୍ଷମ ହୋଇଥିଲେ । କିନ୍ତୁ ହଠାତ୍ ସେମାନେ ଭାରତରୁ ବିଦାୟ ନେବାରୁ ମହତାବଙ୍କର ଏ ପ୍ରଚେଷ୍ଟା ଫଳବତୀ ହୋଇ ପାରିଲା ନାହିଁ । କେବଳ ଏତିକି ନୁହେଁ ଓଡ଼ିଶାର ବିଭିନ୍ନ ସ୍ଥାନରେ ଥିବା ସାଂସ୍କୃତିକ ସ୍ମୃତି ଚିହ୍ନ ଗୁଡ଼ିକର ସୁରକ୍ଷା ପାଇଁ ମହତାବ ଅନେକ ପ୍ରଚେଷ୍ଟା କରିଥିଲେ । ଭୁବନେଶ୍ୱରର ସାଂସ୍କୃତିକ ଐତିହ୍ୟ ଏବଂ ଐତିହାସିକ ସ୍ମୃତିରାଜିକୁ ଓଡ଼ିଆମାନଙ୍କର ପ୍ରେରଣାର ଉତ୍ସ କରିବା ପାଇଁ ସେ ଭୁବନେଶ୍ୱରଠାରେ ନୂଆ ରାଜଧାନୀ ନିର୍ମାଣ କରାଇଥିଲେ । ନିଜେ ପୁରୁଣା ଭୁବନେଶ୍ୱରରେ ଏକାମ୍ର ନିବାସ ନିର୍ମାଣ କରି ମନ୍ଦିରମାଳିନୀ ଭୁବନେଶ୍ୱରରେ ବସବାସ କରିବାର ନିଷ୍ପତ୍ତି ନେଇଥିଲେ ।

ଓଡ଼ିଶାର ସଂସ୍କୃତି, ଐତିହ୍ୟ, ଭାଷା, ସାହିତ୍ୟର ସୁରକ୍ଷା ପାଇଁ ହରେକୃଷ୍ଣ ମହତାବଙ୍କ ଅବଦାନ ବିଷୟ ସର୍ବଶେଷ ଆଲୋଚନା କେବଳ ଏକ ବୃହତ ଗବେଷଣା ସନ୍ଦର୍ଭ ପ୍ରସ୍ତୁତିରେ ଯାଇ ସମ୍ଭବ ହେବ । ଏଠାରେ କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ, ଓଡ଼ିଆତ୍ୱକୁ ନେଇ ଗର୍ବ କରିବାକୁ ଡକ୍ଟର ମହତାବ ଓଡ଼ିଆମାନଙ୍କୁ ଶିଖାଇ ଥିଲେ । ଆଜି ଏ ଶିକ୍ଷାର ଧାରା ଆସ୍ତେ ଆସ୍ତେ ଦୁର୍ବଳ ହୋଇଯାଉଛି । ଓଡ଼ିଆମାନଙ୍କର ସ୍ଥିତି ବିପର୍ଯ୍ୟସ୍ତ । ମାଗି ଯାଚି ନୁହେଁ ଆମକୁ ନେଇ ଆମର ମଥା ଉନ୍ନତ କରିବାକୁ ହେବ । ଆମେ ଓଡ଼ିଆ ବୋଲି ଆମକୁ ବିଶ୍ୱ ଦରବାରରେ ଚିହ୍ନେଇବାକୁ ହେବ । ଏଥିପାଇଁ କାହାର ଦୟା ବା ଅନୁକମ୍ପାର ପ୍ରୟୋଜନ ନାହିଁ ।

*୨ଗ ଏକାମ୍ର ଭିଲ୍ଲା, ଜୟଦେବ ବିହାର,*
*ଭୁବନେଶ୍ୱର-୧୫*



# ଡକ୍ଟର ହରେକୃଷ୍ଣ ମହତାବଙ୍କ ସାମାଜିକ ଚିନ୍ତାଧାରା

ଡକ୍ଟର ମନ୍ଦାକିନୀ ଦାସ

ପାରମ୍ପରିକ ଭାବରେ କହିବାକୁ ଗଲେ, ଡକ୍ଟର ହରେକୃଷ୍ଣ ମହତାବ ଜଣେ ଦାର୍ଶନିକ ନଥିଲେ, କୌଣସି ନୂଆ ସାମାଜିକ ତତ୍ତ୍ୱ ସେ ପ୍ରବର୍ତ୍ତନ କରି ନାହାନ୍ତି; ତେବେ ଜନସାଧାରଣଙ୍କ ସଂପର୍କରେ ଆସି ବିଭିନ୍ନ ସାମାଜିକ ସମସ୍ୟା ସମ୍ବନ୍ଧରେ ଜାଣିବାର ସୁଯୋଗ ସେ ପାଇଥିଲେ ଓ ତା'ରି ଦୂରୀକରଣ ପାଇଁ ଉଦ୍ୟମ କରିଥିଲେ । ସ୍ୱାଧୀନତା ପୂର୍ବରୁ କଂଗ୍ରେସର ଜାତୀୟ ଆନ୍ଦୋଳନ ଓ ଗାନ୍ଧିଜୀଙ୍କ ଗଠନମୂଳକ କାର୍ଯ୍ୟକ୍ରମରେ ବ୍ୟସ୍ତ ଥିବା ମହତାବ, ପରବର୍ତ୍ତୀ ସମୟରେ ରାଜ୍ୟର ମୁଖ୍ୟମନ୍ତ୍ରିତ୍ୱ, କେନ୍ଦ୍ରରେ କ୍ୟାବିନେଟ୍ ମନ୍ତ୍ରୀପଦ, ଅବିଭକ୍ତ ବମ୍ବେ ରାଜ୍ୟର ରାଜ୍ୟପାଳ ପଦବୀ, କଂଗ୍ରେସର ସାଧାରଣ ସଂପାଦକ ପଦବୀ- ଏହିପରି ଅନେକ ଦାୟିତ୍ୱ ମଧ୍ୟରେ ବ୍ୟସ୍ତ ରହିଲେ ମଧ୍ୟ ଜନସାଧାରଣଙ୍କ ସମସ୍ୟାଠାରୁ ନିଜକୁ ଦୂରେଇ ନେଇ ପାରିନାହାନ୍ତି । ବାସ୍ତବ କ୍ଷେତ୍ରରେ କାର୍ଯ୍ୟକରୁଥିବା ଜଣେ ରାଜନୈତିଜ୍ଞ ପ୍ରଶାସକ ଓ ଜନ ସଂଗଠକଙ୍କ ଠାରୁ ରାଷ୍ଟ୍ର ବା ସମାଜର ଉତ୍ପତ୍ତି, କାର୍ଯ୍ୟ ବା ଉପାଦେୟତା ଦେଇ ନୂଆ ତତ୍ତ୍ୱ ବା ଥିଓରି ସୃଷ୍ଟିର ବୌଦ୍ଧିକ କସରତ୍ ଆଶା କରାଯାଇ ନପାରେ । ତଥାପି ଡକ୍ଟର ମହତାବ ରାଜନୀତି ଭିତରେ ବୁଡ଼ିନଯାଇ ଜନସାଧାରଣ ଓ ସମାଜର ସାମୂହିକ କଲ୍ୟାଣ ପାଇଁ ଚିନ୍ତା କରିବା ସହିତ ସେ ଦିଗରେ ଉଦ୍ୟମ କରିଥିଲେ । ସାମାଜିକ ଚେତନାର ବିକାଶ ନଘଟିଲେ ରାଜନୈତିକ ସଚେତନତା ଜାଗ୍ରତ ହୋଇପାରିବ ନାହିଁ ଓ ଏହି ସଚେତନତା ବିନା ପ୍ରବଳ ପରାକ୍ରମୀ ଇଂରେଜ ସରକାରଙ୍କ ବିରୁଦ୍ଧରେ ଗଣ ଆନ୍ଦୋଳନ ସମ୍ଭବ ହେବନାହିଁ । ତେଣୁ ସ୍ୱାଧୀନତା ଆନ୍ଦୋଳନ ଚାଲିଥିବାବେଳେ ସାମାଜିକ ଧାର୍ମିକ ଓ ସାଂସ୍କୃତିକ କ୍ଷେତ୍ରରେ ସଂସ୍କାରମୂଳକ ପଦକ୍ଷେପ ଦ୍ୱାରା ଜନଜୀବନକୁ ଅଧିକ ବିକଶିତ ସଂଗଠିତ ଓ ଉଦ୍ଦେଶ୍ୟ ସାଧିତ ହେଲାପରି ମାର୍ଗରେ ପରିଚାଳିତ କରିବା ପାଇଁ ସେ ଉଦ୍ୟମ କରିଥିଲେ ।

ରାଜା ରାମମୋହନ ବା ଦୟାନନ୍ଦ ସରସ୍ୱତୀଙ୍କ ପରି ସେ ଜଣେ ସମାଜ ସଂସ୍କାରକ ନଥିଲେ ମଧ୍ୟ, ସମାଜର ବିଭିନ୍ନ ସ୍ତରରେ ରହିଥିବା କୁସଂସ୍କାରର ଦୂରୀକରଣ ପାଇଁ ବ୍ୟକ୍ତିଗତ ଉଦ୍ୟମ ସହିତ ଜାତୀୟ କଂଗ୍ରେସ ଦ୍ୱାରା ସାଂଗଠନିକ ସ୍ତରରେ ଉଦ୍ୟମ କରିଥିଲେ । ତାଙ୍କ ଲିଖିତ ଅଗଣିତ ପ୍ରବନ୍ଧ, ନାଟକ, ଉପନ୍ୟାସ, କ୍ଷୁଦ୍ରଗଳ୍ପ ମାଧ୍ୟମରେ ଓ ପୁଣି ବିଭିନ୍ନ ସ୍ଥାନରେ ବିଭିନ୍ନ ସଭା ସମିତିରେ ପ୍ରଦତ୍ତ ଭାଷଣ ମାଧ୍ୟମରେ ପ୍ରଥା ଓ ପରମ୍ପରାର ଅନ୍ଧଧାବକ ନହୋଇ ବୈଜ୍ଞାନିକ ସମ୍ମତ ଚେତନା ଦ୍ୱାରା ଏହାର ଅନୁଶୀଳନ ପାଇଁ ସେ ପରାମର୍ଶ ଦେଇଥିଲେ । କାହାଦ୍ୱାରା ଓ କେତେବେଳେ ସମାଜ ସଂସ୍କାର ପାଇଁ ଉଦ୍ୟମ ହେବା ଉଚିତ ?- ଏହି ପ୍ରଶ୍ନ ସ୍ୱାଧୀନତା ସଂଗ୍ରାମ କାଳରେ ବିବାଦ ସୃଷ୍ଟି କରିଥିଲା । ଇଂରେଜ ସରକାରଙ୍କ ଦ୍ୱାରା ପ୍ରଶାସନିକ ସ୍ତରରେ ସଂସ୍କାର ପାଇଁ ଉଦ୍ୟମ ହେଲେ ଜନସାଧାରଣ ବାଧ୍ୟବାଧକତାରେ ତାହାକୁ ଗ୍ରହଣ କରିବେ ବୋଲି କେତେକ ମତବ୍ୟକ୍ତ କରୁଥିଲା ବେଳେ, ଅନ୍ୟ କେତେକଙ୍କ ମତରେ, ବିଦେଶୀ ସରକାରଙ୍କ ଦ୍ୱାରା ଯେଉଁ ସଂସ୍କାର ଅଣାଯିବ ତାହାକୁ ଜନସାଧାରଣ ସନ୍ଦେହ ଚକ୍ଷୁରେ ଦେଖିବେ । ଭୟଭୀତ ହୋଇ ତାହାକୁ ସେମାନେ ମାନିନେଇ ପାରନ୍ତି; କିନ୍ତୁ ବାସ୍ତବ ଜୀବନରେ ତାହା ଗୃହୀତ ହେବ ନାହିଁ । ସମାଜ ଭିତରୁ ଜନସାଧାରଣଙ୍କ ସ୍ୱ-ଉଦ୍ୟମରେ ଯେଉଁ ସଂସ୍କାରର ଉଦ୍ୟମ ହେବ, ତାହାକୁ ସେମାନେ ସ୍ୱତଃପ୍ରବୃତ୍ତ ଭାବରେ ଗ୍ରହଣ କରିନେବେ । ଏହା ଛଡ଼ା ସ୍ୱାଧୀନତା ଆନ୍ଦୋଳନ ସହିତ ସାମାଜିକ ସ୍ତରରେ ସଂସ୍କାର ପାଇଁ କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ଗାନ୍ଧିଜୀଙ୍କ ସମେତ ଅନେକ ଜାତୀୟତାବାଦୀ ନେତା ଉଦ୍ୟମ କରୁଥିଲା ବେଳେ ଅନ୍ୟ କେତେକ ଏହାର ବିରୋଧ କରୁଥିଲେ । ବାଲ୍ ଗଙ୍ଗାଧର ତିଲକଙ୍କ ପରି ଅନେକ ଚରମପନ୍ଥୀ ନେତାଙ୍କ ମତରେ ସମସ୍ତ ଶକ୍ତିଦେଇ ପ୍ରଥମେ ସ୍ୱାଧୀନତା ହାସଲ ପାଇଁ ଉଦ୍ୟମ ହେବା ଉଚିତ୍ । ସ୍ୱାଧୀନତା ପରେ ସାମାଜିକ, ଧାର୍ମିକ ବା ସାଂସ୍କୃତିକ କ୍ଷେତ୍ରକୁ ବିକଶିତ ଓ ସଂଗଠିତ କରାଯାଇପାରେ । କିନ୍ତୁ ରାଜନୈତିକ ଆନ୍ଦୋଳନ ସହିତ ସାମାଜିକ, ଧାର୍ମିକ ଓ ସାଂସ୍କୃତିକ କ୍ଷେତ୍ର ବା ଦିଗକୁ ସୁସଂହତ, ସଚେତନ ଓ ପରିମାର୍ଜିତ କରାଯିବାର ଉଦ୍ୟମ ଓଡ଼ିଶା ସମେତ ଭାରତର ବିଭିନ୍ନ ପ୍ରାନ୍ତରେ ସଫଳତାର ସହିତ କରାଯାଇଥିଲା ।

ନେହେରୁଙ୍କ ପରି ଡକ୍ଟର ମହତାବ ମଧ୍ୟ ଅନୁଭବ କରିଥିଲେ ଯେ, ଭାରତର ଭବିଷ୍ୟତ ଜାତୀୟ ଏକତା ଓ ସଂହତି ଉପରେ ପର୍ଯ୍ୟବସିତ । ନିଜର ସଂକୀର୍ଣ୍ଣ ସ୍ୱାର୍ଥ ଜନିତ କନ୍ଦଳ ଭିତରେ ବୁଡ଼ି ରହିଲେ, ଦେଶରେ ଅରାଜକତା ଦେଖାଦେବ । ତେଣୁ ଜାତି, ଧର୍ମ, ଭାଷା, ସଂସ୍କୃତି ପ୍ରଭୃତି କୃତ୍ରିମ ପାର୍ଥକ୍ୟ ଦ୍ୱାରା ବିଭେଦ ସୃଷ୍ଟି ନକରି ଏକତା ରକ୍ଷା ପାଇଁ ଉଦ୍ୟମ ହେବା ଆବଶ୍ୟକ । ସାମ୍ପ୍ରଦାୟିକତାର ବିଷ ଯେତେବେଳେ

ପଡ଼ୋଶୀ ରାଜ୍ୟ ପଶ୍ଚିମବଙ୍ଗ ଓ ବିହାରକୁ ଜର୍ଜରିତ କରିଥିଲା, ମୁଖ୍ୟମନ୍ତ୍ରୀ ଭାବରେ ଓଡ଼ିଶାକୁ ସେ ଏହାର ଜ୍ୱାଳାରୁ ରକ୍ଷା କରିପାରିଥିଲେ । ଦେଶ ବିଭାଜନର ଅବ୍ୟବହିତ ପୂର୍ବରୁ ଯେଉଁ ସାମ୍ପ୍ରଦାୟିକ ଦଙ୍ଗା ହୋଇଥିଲା, ସେଥିରେ ହିନ୍ଦୁମାନେ ଅଧିକ କ୍ଷତିଗ୍ରସ୍ତ ହୋଇଥିବା ଦର୍ଶାଇ, ଏହାର ପ୍ରତିବାଦରେ କଟକରେ 'ନୂଆଖାଲି ଦିବସ' ପାଳନ ପାଇଁ ଉଦ୍ୟମ ହୋଇଥିଲା । ସେଥିପାଇଁ ସେ ଅନୁମତି ଦେଇଥିଲେ ମଧ ତାଙ୍କ ଦୂରଦର୍ଶୀତା ହେତୁ ଏହା ଶାନ୍ତିପୂର୍ଣ୍ଣ ଭାବରେ ପାଳିତ ହୋଇପାରିଥିଲା । କେତେକ ହିନ୍ଦୁ ସଂଗଠନ ମୁସଲମାନ ସମ୍ପ୍ରଦାୟକୁ ସନ୍ଦେହ ଚକ୍ଷୁରେ ସେମାନଙ୍କୁ ଦେଶଦ୍ରୋହୀ ଓ ପାକିସ୍ତାନୀ ସମର୍ଥକ ରୂପେ ଚିତ୍ରଣ କରୁଥିଲେ । କିନ୍ତୁ ମହତାବ ସ୍ପଷ୍ଟ କରିଦେଇଥିଲେ ଯେ, ଭୟ ସୃଷ୍ଟି କରି ଦେଶଭକ୍ତି ବା ଆନୁଗତ୍ୟ ସୃଷ୍ଟି କରାଯାଇ ପାରିବନାହିଁ । ସ୍ୱାଭାବିକ ପ୍ରକ୍ରିୟାରେ ଜାତୀୟ ମୁଖ୍ୟସ୍ରୋତରେ ସେମାନଙ୍କୁ ସଂପୃକ୍ତ କରିନେଲେ ଧର୍ମଗତ ଭିନ୍ନତା ଏକତା ସଂହତି ରକ୍ଷାରେ ପ୍ରତିବନ୍ଧକ ହେବନାହିଁ ।

ଯୁଗ ଯୁଗର ଅଜ୍ଞତା ଓ ଅନ୍ଧବିଶ୍ୱାସ ଯୋଗୁଁ ଅନେକ ଅଯୌକ୍ତିକ ପ୍ରଥା ଓ ପରମ୍ପରା ଉପରେ ପର୍ଯ୍ୟବସିତ ହୋଇ ହିନ୍ଦୁଧର୍ମ ମଧ୍ୟଯୁଗୀୟ ଅନ୍ଧକାର ମଧରେ ବନ୍ଦୀ ହୋଇ ରହିଥିଲା । ସାମାଜିକ ଓ ଧାର୍ମିକ ଉତ୍ସବମାନ ପାଳନ କରିବା ସମୟରେ ଅତ୍ୟଧିକ ଖର୍ଚ୍ଚ କରିବାକୁ ପଡୁଥିବାରୁ ବେଳେବେଳେ ଲୋକେ ନିଜ ଜମିବାଡ଼ି ବିକ୍ରି କରିଦେବାକୁ ପଛଉନଥିଲେ । ପିତୃ ମାତୃ ଶ୍ରାଦ୍ଧ ସମୟରେ ସ୍ୱର୍ଗଲୋକରେ ସେମାନଙ୍କ ଆତ୍ମାର ଶାନ୍ତି ପାଇଁ ବ୍ରାହ୍ମଣ ଭୋଜନରେ ମଧ ବ୍ୟୟ କରିବାକୁ ପଡୁଥିଲା । ଡକ୍ଟର ମହତାବ ସେମାନଙ୍କୁ ବୁଝେଇବାକୁ ଚେଷ୍ଟା କରିଥିଲେ ଯେ, ବ୍ୟୟ ବହୁଳ ଧାର୍ମିକ ଉତ୍ସବ ପାଳନ ଦ୍ୱାରା ନିର୍ବାଣ ସମ୍ଭବ ନୁହେଁ; ବରଂ ଗରିବ, ଅସହାୟ ଜନସାଧାରଣଙ୍କ ସେବାରେ ସେହି ଅର୍ଥ ବ୍ୟୟ କରିପାରିଲେ ମହାନ ଉଦ୍ଦେଶ୍ୟ ସାଧିତ ହୋଇପାରିବ ।

କଠୋର ଜାତିପ୍ରଥା ଦ୍ୱାରା ପରସ୍ପର ମଧରେ ସନ୍ଦେହ, ଘୃଣା ସୃଷ୍ଟି ହେବାରୁ ସମାଜରେ ଏକତା ନଥିଲା । ନୀଚ ଜାତିର ଜନସାଧାରଣ ସାମୂହିକ ଭାବରେ ଅବହେଳିତ ଓ ନିର୍ଯାତିତ ହେଉଥିଲେ । ଜାତିଭେଦ ଓ ଛୁଆଁ ଅଛୁଆଁ ଭାବକୁ ହିନ୍ଦୁଧର୍ମର ଦୁଇଟି ଦୁର୍ବଳତା ରୂପେ ଅଭିହିତ କରି ଏହା ବିରୁଦ୍ଧରେ ଧର୍ମାଚାର୍ଯ୍ୟମାନେ ସ୍ୱର ଉତ୍ତୋଳନ କରିବାକୁ ଡକ୍ଟର ମହତାବ ଆହ୍ୱାନ ଦେଇଥିଲେ । ଆକସ୍ମିକ ସଂଯୋଗ ହେତୁ ଜଣେ ଉଚ୍ଚ ଜାତିରେ ଜନ୍ମ ହୋଇଗଲେ, ସମାଜରେ ଉଚ୍ଚସ୍ଥାନ ହାସଲ କରିବା ଉଚିତ୍ ନୁହେଁ । ତେଣୁ ଜାତିଗତ ସାମାଜିକ ବ୍ୟବସ୍ଥାକୁ ପୁନଃବିନ୍ୟାସ କରି ବ୍ୟକ୍ତିଗତ ଗୁଣ, ଯୋଗ୍ୟତା, କାର୍ଯ୍ୟକଳାପ ଓ ମନୋବୃତ୍ତିର ଆଧାର ଉପରେ ପର୍ଯ୍ୟବସିତ କରିବାକୁ ସେ ପରାମର୍ଶ ଦେଇଥିଲେ । ବୃତ୍ତି ଓ କର୍ତ୍ତବ୍ୟକୁ ଆଧାର କରି ବୈଦିକ ସମାଜ ଚାରିଗୋଟି ଶ୍ରେଣୀରେ ବିଭକ୍ତ ହୋଇଥିଲେ

ମଧ୍ୟ ଏହା କଠୋର ନଥିଲା । ବ୍ୟକ୍ତି ଓ ସମାଜ ମଧ୍ୟରେ ସେ ସମୟରେ ସମନ୍ୱୟ ସ୍ଥାପନ ହୋଇପାରିଥିଲା । କିନ୍ତୁ ପରବର୍ତ୍ତୀ ପର୍ଯ୍ୟାୟରେ ଜନ୍ମଗତ ନୀତିକୁ ଆଧାର କରି ଜାତିସ୍ଥିର କରାଯିବା ଦ୍ୱାରା, ବିଭିନ୍ନ ବର୍ଗ ମଧ୍ୟରେ ପାର୍ଥକ୍ୟ ବୃଦ୍ଧି ପାଇ ଅଧିକରୁ ଅଧିକ ଅସଂହତି ଦେଖାଦେଲା । ଭଗବାନଙ୍କ ସୃଷ୍ଟିରେ ସମସ୍ତେ ସମାନ । କିନ୍ତୁ ଜାତିଭେଦ ଦ୍ୱାରା ଉଚ୍ଚବର୍ଣ୍ଣର ଜନସାଧାରଣ ନିଜ ସ୍ୱାର୍ଥ ସାଧନରେ ବ୍ୟସ୍ତ ବୋଲି ସେ ସମାଲୋଚନା କରିଥିଲେ । କିନ୍ତୁ ଏହି ପ୍ରଥାର ଦୂରୀକରଣ ଏଯାଏଁ ହୋଇପାରି ନାହିଁ । ଏହାର ରାଜନୀତିକରଣ ଦ୍ୱାରା ଏହା ଭାରତୀୟ ଜନଜୀବନକୁ ଅଧିକ ବିଭେଦଗ୍ରସ୍ତ କରିଦେଇଛି ।

ଜାତିଭେଦ ଦୂର କରିବା ଦିଗରେ ଡକ୍ଟର ମହତାବଙ୍କ ଉଦ୍ୟମ ଅତୀବ ପ୍ରଶଂସନୀୟ ଥିଲା । ତାଙ୍କ ପରିବାରର ଏକ ମନ୍ଦିରକୁ 'ବିଦ୍ୟାମନ୍ଦିର' ନାମରେ ନାମିତ କରି ସେ ଅଞ୍ଚଳରେ ଶିକ୍ଷାର ପ୍ରସାର ପାଇଁ ମହତାବ ଉଦ୍ୟମ କରିଥିଲେ । ଗାନ୍ଧିଜୀ ପ୍ରବର୍ତ୍ତନ, କରିଥିବା ଗଠନମୂଳକ କାର୍ଯ୍ୟର ପରିଚାଳନା ପାଇଁ ଅନ୍ୟ ଏକ ମନ୍ଦିରକୁ 'କର୍ମମନ୍ଦିର' ନାମରେ ସେ ପରିବର୍ତ୍ତନ କରିଥିଲେ । ପର୍ବପର୍ବାଣୀ ଓ ଉତ୍ସବ ପାଳନରେ ଏହି ଦୁଇ ମନ୍ଦିରରେ ପୂର୍ବରୁ ହେଉଥିବା ଖର୍ଚ୍ଚ ତାଙ୍କ ଦିଗ୍‌ଦର୍ଶନରେ ନୂତନ ଅନୁଷ୍ଠାନର ପରିଚାଳନାରେ ବ୍ୟୟିତ ହେଲା । ହରିଜନମାନଙ୍କ ପାଇଁ ଉନ୍ମୁକ୍ତ ହେବାରେ ତାଙ୍କ ମନ୍ଦିର ଓଡ଼ିଶାରେ ପ୍ରଥମ ଧର୍ମପୀଠ ଥିଲା ।

ଜବାହରଲାଲ ନେହେରୁଙ୍କ ଆମେରିକା ଗସ୍ତ କାଳରେ ସେଠାରେ କାର୍ଯ୍ୟକରୁଥିବା ରାମକୃଷ୍ଣ ମିଶନ ତାଙ୍କୁ ଆମନ୍ତ୍ରଣ କରିଥିଲେ । କିନ୍ତୁ ସେଠାକୁ ପରିଦର୍ଶନରେ ଗଲେ ଧର୍ମନିରପେକ୍ଷତା ବ୍ୟାହତ ହେବାର ଆଳ ନେଇ ସେ ନିମନ୍ତ୍ରଣକୁ ପ୍ରତ୍ୟାଖ୍ୟାନ କରିଦେଇଥିଲେ । କିନ୍ତୁ ଧର୍ମନିରପେକ୍ଷତାର ଏପରି ସଂକୀର୍ଣ୍ଣ ଓ ସୀମିତ ବ୍ୟାଖ୍ୟାକୁ ଡକ୍ଟର ମହତାବ ନାପସନ୍ଦ କରିଥିଲେ । ସେତେବେଳେ ସେ ନେହେରୁଙ୍କ ମନ୍ତ୍ରିମଣ୍ଡଳର ଜଣେ ସଦସ୍ୟ ହୋଇଥିଲେ ମଧ୍ୟ ଏକ ପତ୍ର ମାଧ୍ୟମରେ ନିଜର ପ୍ରତିକ୍ରିୟା ଜଣେଇବାକୁ କୁଣ୍ଠାବୋଧ କରିନଥିଲେ । କୌଣସି ଧାର୍ମିକ ବା ସାଂସ୍କୃତିକ ଅନୁଷ୍ଠାନ ଅସମ୍ମାନ ବା ଅବହେଳା କରିବା ଦ୍ୱାରା ଧର୍ମନିରପେକ୍ଷତାର ମହାନ୍ ଉଦ୍ଦେଶ୍ୟ ସାଧିତ ହୋଇପାରିବ ନାହିଁ । ଧର୍ମ, ଧର୍ମ ମଧ୍ୟରେ କୌଣସି ବାଛ ବିଚାର ନକରି ସରକାର ଓ ପ୍ରଶାସନ ସବୁ ଧର୍ମ ପ୍ରତି ସମାନ ବ୍ୟବହାର ପ୍ରଦର୍ଶନ କରିବା ଉଚିତ୍ ।

ଡକ୍ଟର ମହତାବ ମଧ୍ୟ ଅନୁଭବ କରିପାରିଥିଲେ ଯେ, ଦେଶ ଓ ଜାତିର ଉନ୍ନତି ପାଇଁ ମହିଳାମାନଙ୍କ ବିକାଶ ଓ ସଶକ୍ତିକରଣ ଏକାନ୍ତ ଆବଶ୍ୟକ । କିନ୍ତୁ ଆମ ଦେଶର ଆଇନ କାନୁନ୍ ପୁରୁଷମାନଙ୍କ ଦ୍ୱାରା ପ୍ରବର୍ତ୍ତିତ । ଆମ ସମାଜ ମଧ୍ୟ ପୁରୁଷ-ପ୍ରଧାନ ସମାଜ ହୋଇଥିବାରୁ ମହିଳାମାନଙ୍କ ପ୍ରତି ପକ୍ଷପାତିତାପୂର୍ଣ୍ଣ ବ୍ୟବହାର କରାଯାଏ । ସେମାନଙ୍କୁ ଭାବପ୍ରବଣ, ଅସ୍ଥିରମନା ଭାବରେ ଚିତ୍ରଣ କରାଯାଇ ସମାଜ ଗଠନରେ ସେମାନଙ୍କ

ଭୂମିକାକୁ ଆଗ୍ରହ୍ୟ କରିଦିଆଯାଉଥିଲା । ମୂଲ୍ୟବାନ ବସ୍ତୁପରି ମହିଳାମାନଙ୍କ ଚାରିତ୍ରିକ ଶୁଦ୍ଧତାର ସୁରକ୍ଷା ପାଇଁ ଘରର ଚାରିକାନ୍ଥ ମଧ୍ୟରେ ସେମାନଙ୍କୁ ଆବଦ୍ଧ କରି ରଖାଯାଉଥିଲା । ବିବାହ ସମୟରେ ଝିଅର ସମ୍ମତିକୁ ଅପେକ୍ଷା ନକରି ପିତାମାତା ନିଜ ଇଚ୍ଛା ଅନିଚ୍ଛାକୁ ତା' ଉପରେ ଲଦି ଦେଉଥିଲେ । ଯଦିଓ ରାଜା ରାମମୋହନଙ୍କ ସଂସ୍କାରଗତ ପଦକ୍ଷେପ ଓ ଇଂରେଜ ସରକାରଙ୍କ କଠୋର ଆଇନଗତ କାର୍ଯ୍ୟାନୁଷ୍ଠାନ ଫଳରେ ସତୀପ୍ରଥା ଲୋପ ପାଇଥିଲା, ତେବେ ମଧ୍ୟ ଅନେକ ସାମାଜିକ ବ୍ୟବସ୍ଥା ଫଳରେ ସେମାନେ ଅସହ୍ୟ ଯନ୍ତ୍ରଣା ଓ ହୀନମନ୍ୟତାର ଶିକାର ହେଉଥିଲେ । ମହିଳାମାନଙ୍କ ପୁନଃ ଉଦ୍ଧାରଣ ଓ ସମାଜରେ ସେମାନଙ୍କ ଉପଯୁକ୍ତ ଥଇଥାନ ପାଇଁ ଡଃ ମହତାବ ଉଦ୍ୟମ କରିଥିଲେ । ''ପ୍ରଜାତନ୍ତ୍ର'' ଓ ''ଝଙ୍କାର''ରେ ଅନେକ ପ୍ରବନ୍ଧ ଲେଖିବା ସହିତ ନୂତନ ଧର୍ମ ଓ ପ୍ରତିଭା ପରି କାଳଜୟୀ ରଚନା ଦ୍ୱାରା ସେ ଜନମତ ଜାଗ୍ରତ ପାଇଁ ଚେଷ୍ଟା କରିଥିଲେ । ଏକ ରକ୍ଷଣଶୀଳ ଜମିଦାର ପରିବାର ବୋହୂ ହୋଇଥିଲେ ମଧ୍ୟ ମହତାବଙ୍କ ପ୍ରୋତ୍ସାହନରେ ପତ୍ନୀ ସୁଭଦ୍ରା ମହତାବ ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କରିଥିଲେ । ତଦ୍ଦ୍ୱାରା ଉତ୍ସାହିତ ହୋଇ ଅନ୍ୟ ବର୍ଗର ବହୁ ମହିଳା ଜାତୀୟ ଆନ୍ଦୋଳନରେ ଭାଗ ନେଇଥିଲେ । ବିଦେଶୀ ବସ୍ତ୍ର ବର୍ଜନ, ନିଶା ନିବାରଣ, ହରିଜନ ସେବା ପରି ବିଭିନ୍ନ କଂଗ୍ରେସ କାର୍ଯ୍ୟକ୍ରମରେ ମଧ୍ୟ ମହିଳାମାନେ ସାହସର ସହ ଭାଗ ନେଇଥିଲେ । ବାଲ୍ୟ ବିବାହର ବିରୋଧ କରିବା ସହିତ ଝିଅ ସମ୍ମତିରେ ବିବାହ ହେବା ଉଚିତ୍ ବୋଲି ସେ ମତବ୍ୟକ୍ତ କରିଥିଲେ । ସେହିପରି ପାରିବାରିକ ସମ୍ପତ୍ତିରେ ଝିଅମାନଙ୍କ ଭାଗ ପାଇବାର ଅଧିକାରକୁ ସ୍ୱୀକାର କରି ତତ୍କାଳୀନ ଓଡ଼ିଆ ସମାଜରେ ବଳିଷ୍ଠ ପରିବର୍ତ୍ତନ ପାଇଁ ସେ ଉଦ୍ୟମ କରିଥିଲେ ।

ଜାତୀୟ ସଂଗ୍ରାମ କାଳରେ ଡକ୍ଟର ମହତାବ ନିଶା ନିବାରଣ ପାଇଁ ଉଦ୍ୟମ କରିବା ସହିତ ବିଦେଶୀ ମଦ ଦୋକାନ ଆଗରେ ସତ୍ୟାଗ୍ରହ କରିଥିଲେ । ସ୍ୱାଧୀନୋତ୍ତର ଭାରତରେ ସରକାରୀ ସ୍ତରରେ ନିଶା ନିବାରଣ ନୀତି ପ୍ରବର୍ତ୍ତିତ ହୋଇଥିଲେ ମଧ୍ୟ ଚୋରା ମଦର ବ୍ୟାପକ ପ୍ରଚଳନ ହେତୁ ଏହା ଗୃହୀତ ହୋଇପାରିଲେ, ତଳ ସ୍ତରରେ ଏହା ଏକ ଆଦର୍ଶ ସୃଷ୍ଟି କରିପାରିବ । ସମସ୍ତ ସରକାରୀ ଉତ୍ସବରେ ମଦ୍ୟ ପରିବେଷଣକୁ ସେ ବିରୋଧ କରିବା ସହିତ, ସମସ୍ତ ଅତିଥିଶାଳା, ସରକାରଙ୍କ ଦ୍ୱାରା ପରିଚାଳିତ ହୋଟେଲ ଏପରିକି ଆମ୍ୟାସି ମାନଙ୍କରେ ଏହାର ପ୍ରଚଳନ ନକରିବା ନିମନ୍ତେ ସେ ଦୃଢ଼ ମତ ପୋଷଣ କରିଥିଲେ ।

ବିଦ୍ୟାସାଗରଙ୍କ ପରି ଯଦିଓ ଡକ୍ଟର ମହତାବ ଅନୁଭବ କିରଥିଲେ ଯେ ଶିକ୍ଷାର ଅଭାବ ହେତୁ ଜନସାଧାରଣ ନିଜର ରାଜନୈତିକ ଓ ସାମାଜିକ ଅବସ୍ଥିତି ସଂପର୍କରେ ସଚେତନ ହୋଇପାରନ୍ତି ନାହିଁ; କିନ୍ତୁ ତାଙ୍କ ପରି ଶିକ୍ଷାର ପ୍ରସାର ଦିଗରେ ସେ ଯଥେଷ୍ଟ

ଉଦ୍ୟମ କରି ପାରିନଥିଲେ । ବିଭିନ୍ନ ରାଜନୈତିକ ତଥା ପ୍ରଶାସନିକ କାର୍ଯ୍ୟରେ ବ୍ୟସ୍ତ ରହି ଏ ଦିଗରେ କାର୍ଯ୍ୟ କରିବାର ସମୟ ଓ ସୁବିଧା ପାଇ ପାରିନାହାନ୍ତି ବୋଲି ନିଜେ ସ୍ୱୀକାର କରିଥିଲେ । ବମ୍ବେର ରାଜ୍ୟପାଳ ଥିବା ସମୟରେ ପୁନା ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଯୋଗଦେଇ ଶିକ୍ଷା ଓ ନିଯୁକ୍ତି ସୁଯୋଗ ଉପରେ ସେ ସ୍ପଷ୍ଟ ମତବ୍ୟକ୍ତ କରିଥିଲେ । ଶିକ୍ଷା ଯେ ବେକାରୀ ସମସ୍ୟା ଦୂର କରିପାରି ନାହିଁ ଏହା ସତ୍ୟ । କିନ୍ତୁ ଅଶିକ୍ଷିତ ଜନସାଧାରଣ ନିଯୁକ୍ତି ବିହୀନ ଭାବରେ ବା ଅର୍ଥ ଉପାର୍ଜ୍ଜନର ସୁଯୋଗ ନପାଇ ଯେପରି ଆଗରୁ ନିରବରେ କାଳାତିପାତ କରୁଥିଲେ, ଶିକ୍ଷାର ପ୍ରସାର ପରେ ସେଥିରେ ଘୋର ପରିବର୍ତ୍ତନ ଘଟିଛି । ଶିକ୍ଷିତ ସଚେତନ ବ୍ୟକ୍ତି ନିଜ ଦୁଃଖ ଦୁର୍ଦ୍ଦଶା ପ୍ରତି କର୍ତ୍ତୃପକ୍ଷଙ୍କ ଦୃଷ୍ଟି ଆକର୍ଷଣ କରିପାରୁଛି । ତାଙ୍କ ମୁଖ୍ୟମନ୍ତ୍ରିତ୍ୱ କାଳରେ ପ୍ରତ୍ୟେକ ଜିଲ୍ଲାର ସଦରମହକୁମାରେ ମହାବିଦ୍ୟାଳୟମାନ ଖୋଲା ହୋଇପାରିଥିଲା । ଉତ୍କଳ ବିଶ୍ୱବିଦ୍ୟାଳୟର ବିକାଶ ପାଇଁ ଉଦ୍ୟମ ମଧ୍ୟ ସେ କରିଥିଲେ ।

ଡକ୍ଟର ମହତାବଙ୍କ ସାମାଜିକ ଚିନ୍ତାଧାରା, ସାଧାରଣ ଜନଜୀବନ ସହ ଓତଃପ୍ରୋତ ଭାବରେ ଜଡ଼ିତ । ଅଭିଜ୍ଞତା ଉପରେ ପର୍ଯ୍ୟବସିତ କଳ୍ପନା ପ୍ରସୂତ ବୌଦ୍ଧିକ ଚିନ୍ତନ ନୁହେଁ, ବରଂ ସମସ୍ୟାର ଅନୁଭବ ଓ ତା'ର ଦୂରୀକରଣ ଦିଗରେ ତାଙ୍କର ଚିନ୍ତା ଓ ଉଦ୍ୟମ ଅଭିପ୍ରେତ ଥିଲା ।

*ରାଜନୈତିକ ବିଜ୍ଞାନ ବିଭାଗ,*
*ରେଭେନ୍ସା ମହାବିଦ୍ୟାଳୟ, କଟକ*



# ମହତାବବାବୁ ଓ କୃଷିର ଉନ୍ନତି

ପ୍ରଫେସର ଡକ୍ଟର ବୈଦ୍ୟନାଥ ମିଶ୍ର

ଏବେ ଯେତେବେଳେ କେଲକାର କମିଟି କୃଷି ଉପରେ ଟିକସ ବସେଇବା ପାଇଁ ପ୍ରସ୍ତାବ ଦେଉଛନ୍ତି, ସେତେବେଳେ ମହତାବବାବୁଙ୍କ କଥା ମନେ ପଡ଼ୁଛି । ମହତାବବାବୁ ୨/୩ଟି କଥା ଉପରେ ଗୁରୁତ୍ୱ ଦେଉଥିଲେ । ପ୍ରଥମେ କୃଷିର ଉତ୍ପାଦିକା ଶକ୍ତି ବଢ଼ିବ କିପରି ? ଏହା ଭିତରେ କୃଷିର ଉତ୍ପାଦନ ଅନେକ ବୃଦ୍ଧି ପାଇଛି । କେବଳ ଆମର ଖାଦ୍ୟ ଶସ୍ୟର ହିସାବ ନେଲେ ଦେଖାଯିବ ଯେ ୨୦୦୦-୦୧ ବେଳକୁ ଆମର ଖାଦ୍ୟ ଶସ୍ୟର ପରିମାଣ ପ୍ରାୟ ୨୦୦ ନିୟୁତ ଟନ୍‌କୁ ବୃଦ୍ଧି ପାଇଛି । ଅନେକ ସେଥିପାଇଁ କହୁଛନ୍ତି ଯେ ଆମେ ଖାଦ୍ୟଶସ୍ୟରେ ସ୍ୱାବଲମ୍ବନଶୀଳତା ହାସଲ କରିପାରିଛୁ । କିନ୍ତୁ ଏହାର କାରଣ ଅନେକ ଅନୁସନ୍ଧାନ କରିବାକୁ ଚେଷ୍ଟା କରୁନାହାନ୍ତି । ଖାଦ୍ୟଶସ୍ୟର ଉତ୍ପାଦନ ସବୁ ଅଞ୍ଚଳରେ ସମାନ ଭାବରେ ବୃଦ୍ଧି ପାଇ ନାହିଁ । ବିଶେଷ କରି ଭାରତର ପୂର୍ବାଞ୍ଚଳ ଏ ପର୍ଯ୍ୟନ୍ତ ଅନୁନ୍ନତ ହୋଇ ରହିଛି । ସାରା ଭାରତର ଏକ-ତୃତୀୟାଂଶ ଅଞ୍ଚଳରେ ସବୁଜ ବିପ୍ଳବ ଯୋଗୁ ଖାଦ୍ୟ ଶସ୍ୟର ଉତ୍ପାଦନ ଅନେକ ପରିମାଣରେ ବୃଦ୍ଧି ପାଇଛି । ଅନ୍ୟସବୁ ଅଞ୍ଚଳ ସେ ସୁଯୋଗ ପାଇନାହିଁ । ପୁଣି ଯେତେ ଖାଦ୍ୟ ଶସ୍ୟ ଉତ୍ପାଦନ ହେଉଛି, ତାକୁ ଖରିଦ କରିବାକୁ ଅନେକ ଲୋକଙ୍କ ପାଖରେ ଅର୍ଥ ନାହିଁ । ତେଣୁ ଆମେ କିଛି ବଳକା ଶସ୍ୟକୁ ବିଦେଶକୁ ରପ୍ତାନି କରିବାର ସୁଯୋଗ ପାଉଛୁ । ଏହାର ଅର୍ଥ ଯେଉଁମାନେ ଏବେ କୃଷିରେ କାମ କରୁଛନ୍ତି, ସେମାନଙ୍କର ଜମିର ଉତ୍ପାଦିକା ଶକ୍ତି ଯଦି ବୃଦ୍ଧି ନ ହେବ, ତାହା ହେଲେ ସେମାନେ ଅଧିକ ଆୟ ସଂଗ୍ରହ କରିପାରିବେ ନାହିଁ କି ଉତ୍ପାଦିତ ହେଉଥିବା ଖାଦ୍ୟ ଶସ୍ୟକୁ ବିକ୍ରି କରି ନିଜର ଚାହିଦା ପୂରଣ କରିପାରିବେ ନାହିଁ । ସେଥିପାଇଁ ମହତାବବାବୁ ଜମିର ଉତ୍ପାଦିକା ଶକ୍ତି ବୃଦ୍ଧି କରିବାପାଇଁ ଚାଷୀମାନଙ୍କୁ ଆଧୁନିକ ଉତ୍ପାଦନଭିତ୍ତିକ ଟେକ୍‌ନୋଲୋଜି ପ୍ରୟୋଗ କରିବାକୁ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ସ୍ୱପ୍ନ ଦେଖିଥିଲେ । କାରଣ କେବଳ ସରକାରୀ ସ୍ତରରେ ଏହି ଜ୍ଞାନ ସହଜରେ ଚାଷୀମାନଙ୍କ ପାଖରେ ପହଞ୍ଚିପାରିବ ନାହିଁ ।

ବିଶେଷଜ୍ଞମାନେ ଯେପରି ସେହି କାମ କରିପାରିବେ, ସରକାରୀ କର୍ମଚାରୀମାନେ ସେହି କାମ କରିପାରିବେ ନାହିଁ । ସରକାରୀ ସ୍ତରରେ ଜଳସେଚନ ହେବ, କିନ୍ତୁ ପ୍ରସାରଣ କାମ ବିଶ୍ୱବିଦ୍ୟାଳୟର ବିଶେଷଜ୍ଞମାନେ କରିବେ ।

ଏହି ଉତ୍ପାଦିକା ଶକ୍ତି ବୃଦ୍ଧି ପାଇଁ ଆଧୁନିକ ନିଟପୁଟ ଦରକାର । ବିଶେଷ କରି ସବୁଜ ବିପ୍ଳବରେ ଅଧିକ ଉତ୍ପାଦନଭିତ୍ତିକ ବିହନ, କେମିକାଲ ସାର, ପୋକମରା ଔଷଧର ଆବଶ୍ୟକ । ୫୦ଦଶକରେ ସେ ସବୁ ଜଣା ନଥିଲା । ୧୯୬୬-୬୭ ବେଳକୁ ଏହି ସବୁଜ ବିପ୍ଳବର ଆରମ୍ଭ ହେଲା । ତେଣୁ ୫୦ଦଶକ ବେଳକୁ ୨ଟି କଥା ଉପରେ ବିଶେଷ ଗୁରୁତ୍ୱ ଦିଆଯାଉଥିଲା । ପ୍ରଥମ ହେଉଛି ମରୁଡ଼ି ଓ ବନ୍ୟାରୁ ଚାଷୀମାନେ କିପରି ରକ୍ଷା ପାଇପାରିବେ । ଏହି ପ୍ରାକୃତିକ ବିପଦ ଓଡ଼ିଶାର ଚିର ସହଚର । କେବଳ ଓଡ଼ିଶାରେ ନୁହେଁ, ସାରା ଭାରତରେ ମଧ୍ୟ । ଚାଷୀମାନେ ଏହି ପ୍ରାକୃତିକ ବିପଦରୁ କିପରି ରକ୍ଷା ପାଇବେ, ସେଥିପାଇଁ ମହତାବ ବାବୁ । ହୀରାକୁଦ ବନ୍ଧ ଆରମ୍ଭ କରିଥିଲେ । ସେତେବେଳେ ଏହା ବିରୁଦ୍ଧରେ ଅନେକ ଆନ୍ଦୋଳନ ହୋଇଥିଲା । କିନ୍ତୁ ଖୁବ୍ ଦୃଢ଼ତାର ସହିତ ସେହି ଆନ୍ଦୋଳନକୁ ମୁକାବିଲା କରି ସେହି ବନ୍ଧ କାର୍ଯ୍ୟ ସମାପନ କରିଥିଲେ । ସେହି ବନ୍ଧ ଖାଲି ଜଳସେଚନ ବୃଦ୍ଧ କଲାନାହିଁ, ଅନେକାଂଶରେ ମରୁଡ଼ି ଓ ବିନ୍ୟାରୁ ଚାଷୀକୂଳକୁ ରକ୍ଷା କରିପାରିଲା । ହୀରାକୁଦ ବନ୍ଧ ମହତାବବାବୁଙ୍କର ଏକ ବିରାଟ ଅବଦାନ । ଏହି ବନ୍ଧ ଯୋଗୁ ଅନେକ ଅଞ୍ଚଳର ଚାଷୀମାନେ ବିଭିନ୍ନ ଫସଲ କରି ଅଧିକ ରୋଜଗାର କରିବାକୁ ସୁଯୋଗ ପାଇଲେ । ଯେଉଁସବୁ ଜମିରେ ଗୋଟିଏ ଧାନ ଉତ୍ପନ୍ନ ହେଉଥିଲା, ସେଠାରେ ଦୁଇଟି ଧାନ ଉତ୍ପନ୍ନ ହୋଇପାରିଲା ଏବଂ ଅନ୍ୟମାନେ ଗୋଟିଏ ଧାନ କରି ରବି ଫସଲ କଲେ, ସେମାନେ ମଧ୍ୟ ଚାଷରୁ ଅଧିକ ଫସଲ ଆମଦାନୀ କରି ନିଜର ଆୟ ବୃଦ୍ଧି କରିପାରିଲେ ।

୫୦ଦଶକର ଗୋଟିଏ ବଡ଼ ବିବଦମାନ ସମସ୍ୟା ଥିଲା ଧାନ ଚାଉଳର ଦର । ମଧ୍ୟବିତ୍ତ ଶ୍ରେଣୀ ଲୋକମାନେ ଧାନ ଚାଉଳ ଦର କମେଇବା ପାଇଁ ଅନେକ ଯୁକ୍ତି ବାଢ଼ୁଥିଲେ । ବିଶେଷ କରି ଶିଳ୍ପପତିମାନେ ସେଥିରେ ଅଗ୍ରଣୀ ଥିଲେ । କାରଣ ଚାଉଳର ଦର ବୃଦ୍ଧି ହେଲେ ଶିଳ୍ପପତିମାନଙ୍କୁ ସେମାନଙ୍କୁ ମଜୁରିଆମାନଙ୍କୁ ଅଧିକ ମଜୁରୀ ଦେବାକୁ ପଡ଼ିବ । ସହରରେ ବାସ କରୁଥିବା କିଣିଖିଆମାନେ ସେଥିରେ ମଧ୍ୟ ଭାଗ ନେଉଥିଲେ । ଚାଉଳ ବିଶେଷ କରି ଓଡ଼ିଶାରେ ପ୍ରଧାନ ଖାଦ୍ୟ, ଓଡ଼ିଶାରେ ଧାନ ମଧ୍ୟ ପ୍ରଧାନ ଫସଲ । ଏହି ଆନ୍ଦୋଳନ କେବଳ ଓଡ଼ିଶାର ନୁହେଁ, ସାରା ଭାରତରେ ଏହି ପ୍ରଶ୍ନ ମଧ୍ୟ ଉଠୁଛି । ଏବେ ମଧ୍ୟ ଚାଷୀମାନେ ବିଭିନ୍ନ ଜାଗାରେ ସେଥିପାଇଁ ଆନ୍ଦୋଳନ କରୁଛନ୍ତି । ଓଡ଼ିଶାରେ ଏହି ଆନ୍ଦୋଳନ ଯେତେବେଳେ ମୁଣ୍ଡ ଟେକି ଉଠିଲା; ସେତେବେଳେ ମହତାବ ବାବୁ ଅନେକ

ଯୁକ୍ତି ବାଢ଼ି ଚାଉଳର ଦରଦାମ ବୃଦ୍ଧି ପାଇଁ ମତ ଦେଲେ । ଏହା କେବଳ ରାଜନୀତିକ ବିଚାର ନୁହେଁ । କାରଣ ସେହି ଓଡ଼ିଶାରେ ଚାଷୀମାନଙ୍କ ଅବସ୍ଥା ଯାହା ସେଥିରୁ ଦେଖାଯାଏ ଯେ ସେମାନେ ଧାନ ଫସଲ ଉପରେ ବେଶି ନିର୍ଭର କରନ୍ତି । ସେମାନଙ୍କର ଅନ୍ୟ କୌଣସି ଜୀବିକା ନାହିଁ । ଖୁବ୍ କମ୍ ଅର୍ଥକରୀ ଫସଲ ଉତ୍ପାଦନ କରନ୍ତି । ଅର୍ଥକାରୀ ଫସଲ ପାଇଁ ଓଡ଼ିଶାରେ ବଜାର ନାହିଁ । ଏବେ ଅବଶ୍ୟ ଅର୍ଥକାରୀ ଫସଲ ପାଇଁ କିଛି ବଜାର ସୃଷ୍ଟି ହେଲାଣି । ସହର ପାଖାପାଖି ଅଞ୍ଚଳରେ ବଜାର ଯୋଗୁ କିଛି ଚାଷୀ କୋବି, ବିଲାତି ବାଇଗଣ, ପିଆଜ ପ୍ରଭୃତି ଅର୍ଥକାରୀ ଫସଲ ଉତ୍ପାଦନ କରି ରାସ୍ତାକଡ଼ରେ ବିକ୍ରି କରିବାର ଦେଖାଯାଉଛି । ପନିପରିବା ଓ ଫଳମୂଳ ବହୁତ ପରିମାଣରେ ଉତ୍ପାଦିତ ହେଲେ ଚାଷୀମାନେ କିଛି ଅଧିକ ଲାଭ ପାଇ ପାରିବେ । ସେଥିପାଇଁ ଖର୍ଚ୍ଚ ମଧ ଅଧିକ । ମହତାବବାବୁ ଯେତେବେଳେ ଚାଷୀମାନଙ୍କର ଉତ୍ପାଦିତ ଚାଉଳର ଦର ବୃଦ୍ଧି କରିବାକୁ ଯୁକ୍ତି ବାଢ଼ୁଥିଲେ, ସେତେବେଳେ ପନିପରିବା ବା ଫଳମୂଳର ଉତ୍ପାଦନ ମାତ୍ରା ଖୁବ୍ କମ୍ ଥିଲା । ଚାଷୀମାନଙ୍କର ଅର୍ଥକରୀ ଫସଲ ଉତ୍ପାଦନ କରିବାକୁ ଧ୍ୟାନ ନଥିଲା କି ବଜାରର ମାତ୍ରା ସେତେ ସତେଜ ନଥିଲା । ଏବେ ପଞ୍ଜାବ ଓ ହରିଆନାରେ ସେହି ପନିପରିବା ଓ ଫଳମୂଳର ଚାଷ ବହୁ ପରିମାଣରେ ବୃଦ୍ଧି ହୋଇଛି । ଓଡ଼ିଶା ଏ ପର୍ଯ୍ୟନ୍ତ ଧାନଚାଷରେ ସୀମିତ ହୋଇ ରହିଛି । କେବଳ ୯୦ଭାଗ ଜମିରେ ଖାଦ୍ୟଶସ୍ୟ ଓ ୭୦/୭୫ ଭାଗ ଜମିରେ ଧାନ ଉତ୍ପାଦିତ ହେଉଛି । ଏ ବର୍ଷର ଅସୁବିଧା ତ ଅନେକ ଅଧିକ । ତେଣୁ ଓଡ଼ିଶାରେ ଯେଉଁ ଚାଷୀମାନେ ଧାନ ଫସଲ କରି ଜୀବିକା ନିର୍ବାହ କରୁଛନ୍ତି, ସେମାନଙ୍କୁ ଯଦି ଟିକିଏ ଅଧିକ ଦର ନ ମିଳିବ, ସେମାନେ ଚଳିବେ କିପରି ? ମହତାବବାବୁ ସେତେବେଳେ ଯେଉଁ ଦୂରଦୃଷ୍ଟିର ସୂଚନା ଦେଇଥିଲେ, ତା'ର ଆବଶ୍ୟକତା ଅନ୍ତତଃ ଓଡ଼ିଶା କ୍ଷେତ୍ରରେ ଏପର୍ଯ୍ୟନ୍ତ ଅଛି । ଓଡ଼ିଶାର ଚାଷୀମାନେ କର ଦେବାପାଇଁ ଏପର୍ଯ୍ୟନ୍ତ ସକ୍ଷମ ହୋଇନାହାନ୍ତି ।



# ଦୟା ଓ ଦରଦର ମହତାବୀୟ ପରିଭାଷା

## ଡାକ୍ତର ରବିରଞ୍ଜନ ସାହୁ

କ୍ଷମତାରେ ଥାଆନ୍ତୁ ଅବା ନ'ଥାନ୍ତୁ । ରାଜ୍ୟ ରାଜନୀତିରେ ମହାତାବଙ୍କ୍ଷୀଙ୍କର ପ୍ରଭାବ ସର୍ବଦା ଅତୁଟ ରହିଥାଏ । ଦଶନ୍ଧି ଦଶନ୍ଧି ଧରି ଓଡ଼ିଶାର ଜନଜୀବନକୁ ପ୍ରଭାବିତ କରି ଆସିଥିବା ମହତାବଜୀ ସେତେବେଳେ ବିହାରୀବାଗସ୍ଥିତ ପ୍ରଜାତନ୍ତ୍ର ଭବନରେ ପ୍ରତି ଅପରାହ୍ଣରେ ନିଜ ସମର୍ଥକ ଓ ଶୁଭେଚ୍ଛୁମାନଙ୍କ ଗହଣରେ ବିଭିନ୍ନ ବିଷୟରେ ଆଲୋଚନା କରନ୍ତି, ଏହିଭଳି ଏକ ମୁହୂର୍ତ୍ତରେ ତାଙ୍କର ସାନିଧ୍ୟ ଲାଭ କରିବା ପରମ ସୌଭାଗ୍ୟର ବିଷୟ ।

୧୯୮୦ ମସିହାରେ ଲେଖକ ସେତେବେଳେ ଆଇ.ଏସ.ସି. ପରୀକ୍ଷା ଦେଇସାରି ମେଡ଼ିକାଲ ପ୍ରବେଶିକା ପରୀକ୍ଷା ପାଇଁ ନିଜକୁ ପ୍ରସ୍ତୁତ କରୁଥିଲା । ସେ ବର୍ଷ ଓଡ଼ିଶାରେ ପ୍ରଚଣ୍ଡ ପ୍ରଳୟଙ୍କରୀ ବନ୍ୟା ଆସି ଦଳେଇ ଘାଇ ଭାଙ୍ଗିଯାଇଥିବାରୁ ରାଜ୍ୟର ପ୍ରଭୂତ କ୍ଷତି ଘଟିଥାଏ । ଏହି କାରଣରୁ ବିଶ୍ୱବିଦ୍ୟାଳୟ ପରୀକ୍ଷା ଫଳ ପ୍ରକାଶନ ଓ ମେଡ଼ିକାଲ ପ୍ରବେଶିକା ପରୀକ୍ଷା ହେବା କ୍ଷେତ୍ରରେ ବିଳମ୍ବ ଘଟୁଥାଏ । ପ୍ରବେଶିକା ପରୀକ୍ଷା ଯେତେ ବିଳମ୍ବ ହେଉଥାଏ, ରାଜ୍ୟରେ ଡାକ୍ତରୀ ପଢ଼ିବାକୁ ଆଶା ପୋଷଣ କରିଥିବା ବହୁ ମେଧାବୀ ଛାତ୍ରଙ୍କର ଭାଗ୍ୟ ଅନିଶ୍ଚିତ ଅବସ୍ଥାରେ ଥାଏ । ଆଶା, ଆଶଙ୍କା ଓ ଉଦ୍‌ବେଳନର ଭଉଁରୀ ଭିତରେ ଛାତ୍ର ଛାତ୍ରୀମାନେ ଉବୁଟୁବୁ ହେଉଥା'ନ୍ତି । ଏଭଳି ଏକ ଆଶଙ୍କାରୁ ନିସ୍ତାର ପାଇବା ପାଇଁ ସମସ୍ତେ (ଛାତ୍ରଛାତ୍ରୀ) ସେତେବେଳେ ରାହା ଖୋଜୁଥାନ୍ତି । ସେତିକିବେଳେ ମନ ଭିତରକୁ ଆସିଗଲେ ମହାତାବଜୀ । ଏ ସମୟରେ ତାଙ୍କର ସହଯୋଗ ଲୋଡ଼ା ।

ମହାତାବଙ୍କୁ ଭେଟି ସବୁକଥା ଜଣାଇବା ପାଇଁ ଏହି ଲେଖକଙ୍କ ସହିତ ଅନ୍ୟ କେତେକ ଛାତ୍ରନେତା ନିଷ୍ପତ୍ତି ନେଲେ ଏବଂ ଲେଖକଙ୍କର ନେତୃତ୍ୱରେ ଦଳେ ଛାତ୍ର ବିହାରୀବାଗ ଯାଇ ଅପରାହ୍ଣ ୪ଟା ବେଳେ ମହତାବଙ୍କ ଦରବାରରେ ଯୋଗ ଦେଲେ । ଯୁବବତ୍ସଳ ମହତାବ ଛାତ୍ରମାନଙ୍କର ଆବେଦନକୁ ଧୈର୍ଯ୍ୟର ସହିତ ଶୁଣିଲେ । ଆମ୍ଭମାନଙ୍କର ନିବେଦନ

ଥିଲା ଏହି ଯେ, ମଧ୍ୟମ ବିଜ୍ଞାନ ପରୀକ୍ଷା ଫଳ ତୁରନ୍ତ ପ୍ରକାଶ ନପାଇଲେ ଓଡ଼ିଶାର ବହୁ ମେଧାବୀ ଛାତ୍ର ଅନ୍ୟ ରାଜ୍ୟରେ ବିଭିନ୍ନ ବୈଷୟିକ ପାଠ୍ୟକ୍ରମରେ ପ୍ରବେଶ କରିପାରିବେ ନାହିଁ ଏବଂ ମେଡ଼ିକାଲ ପ୍ରବେଶିକା ପରୀକ୍ଷା ମଧ୍ୟ ଯଥା ସମୟରେ କରାନଗଲେ ବହୁ ଆଶାୟୀ ଛାତ୍ରଛାତ୍ରୀଙ୍କୁ ନିରାଶ ହେବାକୁ ପଡ଼ିବ ।

ଦୟାର ଅବତାର ମହତାବ ଏ ସବୁ ଶୁଣି ହୃଦୟଙ୍ଗମ କଲେ ଯେ, ଛାତ୍ରଛାତ୍ରୀମାନଙ୍କର କଲ୍ୟାଣ ଦୃଷ୍ଟିରୁ ରାଜ୍ୟର ସେତେବେଳେ ତିନୋଟିଯାକ ବିଶ୍ୱବିଦ୍ୟାଳୟ (ଉତ୍କଳ, ସମ୍ବଲପୁର ଓ ବ୍ରହ୍ମପୁର) ଯଥାଶୀଘ୍ର ପରୀକ୍ଷା ଫଳ ପ୍ରକାଶ କରାଇବା ସଙ୍ଗେ ସଙ୍ଗେ ମିଳିତ ପ୍ରବେଶିକା ପରୀକ୍ଷା ମଧ୍ୟ ତୁରନ୍ତ ହେବା ଦିଗରେ ରାଜ୍ୟ ସରକାର ପଦକ୍ଷେପ ନେବା ଉଚିତ୍ ।

ମହତାବଜୀ ନିଜେ ତତ୍କ୍ଷଣାତ୍ ଟେଲିଫୋନ୍ ଯୋଗେ ସେତେବେଳର କୁଳାଧିପତି ତଥା ଓଡ଼ିଶାର ରାଜ୍ୟପାଳଙ୍କ ସହିତ ପରୀକ୍ଷା ଫଳ ପ୍ରକାଶନ ଓ ପ୍ରବେଶିକା ପରୀକ୍ଷା ସମ୍ପର୍କରେ କଥା ହେଲେ । ତା'ପରେ ପ୍ରବେଶିକା ପରୀକ୍ଷା ପାଇଁ ପ୍ରସ୍ତୁତ ହେବାକୁ ନିର୍ଦ୍ଦେଶ ଦେଇ ଛାତ୍ରମାନଙ୍କୁ ବିଦାୟ ଦେଲେ । ଆଶ୍ଚର୍ଯ୍ୟର କଥା ମହତାବଙ୍କ ପାଖରୁ ଫେରିବାର ମାତ୍ର ସପ୍ତାହକ ମଧ୍ୟରେ ପରୀକ୍ଷା ଫଳ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ପ୍ରବେଶିକା ପରୀକ୍ଷା ପାଇଁ ବିଜ୍ଞପ୍ତି ଜାରୀ ହେଲା । ଏଥିରେ ଛାତ୍ରଛାତ୍ରୀମାନଙ୍କର ଆନନ୍ଦର ସୀମା ରହିଲା ନାହିଁ । ମହତାବଙ୍କ କରିସ୍ମା ନିକଟରେ ସମସ୍ତଙ୍କର ମଥା ସ୍ୱତଃ ନଇଁଗଲା । ସମସ୍ତେ ତାଙ୍କୁ କୃତଜ୍ଞତା ଜଣାଇଲେ । ମହାତାବଜୀଙ୍କ ହସ୍ତକ୍ଷେପ ବିନା ଏ ଲେଖକ ଆଜି ହୁଏତ ଦନ୍ତ ଚିକିତ୍ସକ ଭାବେ ଜନସାଧାରଣଙ୍କର ସେବା କରିବାର ସୁଯୋଗ ପାଇଥାନ୍ତା କି ନା ତାହା ସନ୍ଦେହଜନକ ।

ମହତାବଙ୍କ ସହିତ ପ୍ରଥମ ସାକ୍ଷାତ ପରେ ତାଙ୍କ ପ୍ରତି ଥିବା ଦୂରତାର ବ୍ୟବଧାନ କମିଗଲା । ବିଭିନ୍ନ ସମୟରେ ତାଙ୍କର ସହଯୋଗ ପାଇଁ ଏ ଲେଖକ ତାଙ୍କ ପାଖକୁ ଯାଇଛି । ଏଭଳି ଏକ ବିରାଟ ବଟଦ୍ରୁମକୁ ଚିହ୍ନିବା କଷ୍ଟସାଧ୍ୟ ହେଲେ ମଧ୍ୟ ତା'ର ଅସଂଖ୍ୟ ଓହଳକୁ ଆଶ୍ରୟ କରି ବହୁ ପରିବାର ଜୀବିକା ନିର୍ବାହ କରୁଛନ୍ତି । ଏହା ମହତାବଜୀଙ୍କର ଏକ ମହାନ ସ୍ୱତନ୍ତ୍ରତା ।

ଆଉ ଥରେ କଟକସ୍ଥ ଷ୍ଟୁଆର୍ଟ ବିଜ୍ଞାନ ମହାବିଦ୍ୟାଳୟର ଛାତ୍ର ଥିବା ବେଳେ ଏକ ସାହିତ୍ୟ ପତ୍ରିକା ପ୍ରକାଶନ ପାଇଁ ଏହି ଲେଖକ ଅନ୍ୟାନ୍ୟ ବନ୍ଧୁଙ୍କ ସହିତ ମହତାବଙ୍କୁ ଭେଟି ସଫଳକାମ ହୋଇପାରିଥିଲା । ମହତାବଙ୍କ ପ୍ରେରଣାରେ ପ୍ରଜାତନ୍ତ୍ରର ବଳକା ନ୍ୟୁଜପ୍ରିଣ୍ଟ କାଗଜରେ 'ସମୀଚୀନ' ନାମକ ଏକ ତ୍ରୈମାସିକ ସାହିତ୍ୟ ପତ୍ରିକା ଲେଖକଙ୍କ ଉଦ୍ୟମରେ କଟକରୁ ପ୍ରକାଶ ପାଇଲା । ପତ୍ରିକାଟି ମାତ୍ର ତିନୋଟି ସଂଖ୍ୟା ପରେ ବନ୍ଦ ହୋଇଗଲା ।

ପତ୍ରିକାର ପ୍ରକାଶନ ପାଇଁ ମହତାବଙ୍କଙ୍କର ସହଯୋଗ ଦ୍ୱାର ଖୋଲା ଥିଲେ ମଧ୍ୟ ବିଭିନ୍ନ କାରଣରୁ ଛାତ୍ରବନ୍ଧୁମାନଙ୍କ ମଧ୍ୟରେ ଆଗ୍ରହ ପ୍ରକାଶ ନ ପାଇବାରୁ 'ସମୀଚୀନ' ବାଧ୍ୟ ହୋଇ ଅକାଳ ମୃତ୍ୟୁର ଶିକାର ହେଲା ।

ଆଉ ଦିନକର ଘଟଣା । ସେତେବେଳେ କଟକସ୍ଥିତ ଶ୍ରୀରାମ ଚନ୍ଦ୍ର ଭଞ୍ଜ ଭେଷଜ ମହାବିଦ୍ୟାଳୟର ୧୩ଟି ଗୃହକୁ 'ବିପଜ୍ଜନକ' ଘୋଷଣା କରାଯାଇଥିଲେ ମଧ୍ୟ ସେ ସବୁ ଗୃହରେ ପାଠ ପଢ଼ା ଚାଲିଥାଏ । ହଠାତ୍ ଏହି ୧୩ଟି ଗୃହ ଅନ୍ତର୍ଭୁକ୍ତ ଗ୍ୟାଷ୍ଟ୍ରୋଏଣ୍ଟେରୋଲୋଜି କୋଠାର ଛାତ ଭୁଷୁଡ଼ି ପଡ଼ିଲା । ଯଦି ଛାତଟି ସେତିକିବେଳେ ନ ଖସି ଆଉ ଅଧ ଘଣ୍ଟାଏ ପରେ ଖସି ପଡ଼ିଥା'ନ୍ତା, ତା' ହେଲେ ବହୁ ଛାତ୍ରଛାତ୍ରୀଙ୍କ ସମେତ ଅଧ୍ୟାପକମାନଙ୍କୁ ମଧ୍ୟ ଅକାଳ ଦୁର୍ଦ୍ଦଶାର ସମ୍ମୁଖୀନ ହେବାକୁ ପଡ଼ିଥାନ୍ତା । ଏ ଘଟଣା ସେତେବେଳେ ସାରା ରାଜ୍ୟରେ ଚାଞ୍ଚଲ୍ୟ ସୃଷ୍ଟି କରିଥିଲା । ଏ ଘଟଣାରେ ମର୍ମାହତ ହୋଇ ଏ ଲେଖକ ଅନ୍ୟାନ୍ୟ ବନ୍ଧୁଙ୍କ ସହିତ ମହତାବଙ୍କୀଙ୍କୁ ଭେଟି ଏହାର ଆଶୁ ସମାଧାନ ସ୍ୱରୂପ ଦନ୍ତ ଚିକିତ୍ସା ମହାବିଦ୍ୟାଳୟର ନୂତନ ଗୃହ ନିର୍ମାଣ ନିମନ୍ତେ ବ୍ୟବସ୍ଥା କରିବା ସକାଶେ ଅନୁରୋଧ କରିଥିଲା । ମହତାବଜୀ ଘଟଣାର ଗମ୍ଭୀରତାକୁ ବିଚାରକୁ ନେଇ ତତ୍କାଳୀନ ସ୍ୱାସ୍ଥ୍ୟମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀଙ୍କ ସହ ଟେଲିଫୋନ୍ ଯୋଗେ ଆଲୋଚନା କଲେ । ଏହି ଆଲୋଚନାର ଫଳ ସ୍ୱରୂପ ନୂତନ ଗୃହ ନିର୍ମାଣ ନିମନ୍ତେ ପଥ ପରିଷ୍କାର ହୋଇଗଲା ।

୧୯୮୦ ମସିହାରେ ଛାତ୍ର ଆନ୍ଦୋଳନରେ ଏ ଲେଖକ ମଧ୍ୟ ଆନ୍ଦୋଳନାତ୍ମକ କାର୍ଯ୍ୟକ୍ରମରେ ନିଜକୁ ସାମିଲ କରିଥିଲା । ଗୌରୀଶଙ୍କର ପାର୍କ ଠାରେ ଏକ ଛାତ୍ର ସମାବେଶରେ ଯୋଗଦେଇ ଘରକୁ ଫେରିବା ପରେ ଜାଣିବାକୁ ପାଇଲା ଯେ, ପୋଲିସ ଗିରଫ କରିବା ପାଇଁ ତାଙ୍କୁ ଖୋଜୁଛି । ଆଉ କାଳବିଳମ୍ବ ନକରି ଏ ଲେଖକ ତୁରନ୍ତ ମହତାବଙ୍କୁ ବିହାରୀବାଗରେ ଭେଟି ତାଙ୍କର ସାହାଯ୍ୟ ଲୋଡ଼ିଥିଲା । ମହତାବଙ୍କ ହସ୍ତକ୍ଷେପ ଫଳରେ ଲେଖକ ଗିରଫଦାରୀରୁ ନିସ୍ତାର ପାଇଲା । ଆଜି ତାଙ୍କର ଜୟନ୍ତୀ ପାଳନ ଅବସରରେ ଏହି ଦରଦୀ ଓ ଦୟାବାନ୍ ପୁରୁଷଙ୍କୁ ସ୍ମରଣ କରିବା ସହିତ ଶ୍ରଦ୍ଧାଞ୍ଜଳି ବାଢୁଛି ।

*ଚାନ୍ଦିନୀଚୌକ, କଟକ-୨*



# ସେ ଥିଲେ କାଳଜୟୀ ଇତିହାସ ପୁରୁଷ

ଫକୀର ହରିଚନ୍ଦନ

ଲେଖିବା ପଢ଼ିବା ପାଇଁ ପ୍ରବଳ ଇଚ୍ଛାଶକ୍ତି ସତ୍ତ୍ୱେ ସ୍ୱାସ୍ଥ୍ୟଗତ କାରଣରୁ କେତେଦିନ ହେଲା ଲେଖିବା ଓ ପଢ଼ିବା ସମ୍ପୂର୍ଣ୍ଣ ବନ୍ଦ କରିବାକୁ ବାଧ ହୋଇଛି । ଖୁବ୍ ଅଳ୍ପ ସମୟ ପାଇଁ କିଛି ଲେଖିଲେ ବା ପଢ଼ିଲେ ଅସୁସ୍ଥତା ବଢ଼ିଯାଉଛି । ଏଇ ଅବସ୍ଥାରେ ନୃସିଂହବାବୁ ପ୍ରଜାତନ୍ତ୍ର ମୀନାବଜାରର ପୂର୍ବତନ 'ଜହୁରୀ ଭାଇ' ଶ୍ରୀ ନୃସିଂହ ଚରଣ ସାହୁ ମୋତେ ଅନୁରୋଧ କଲେ ଆଗାମୀ ୨୧ ତାରିଖ ମହତାବଙ୍କ ଜୟନ୍ତୀ ପାଇଁ କିଛି ଲେଖିବାକୁ । ଅକ୍ଷମତା ପ୍ରକାଶ କରି ଲେଖିପାରିବି ନାହିଁ ବୋଲି କହିଦେଲି । କିନ୍ତୁ ମନ ବୁଝିଲା ନାହିଁ । ତେଣୁ ମନବୁଝିଲା ଭଳି ଆଉ କାହା ହାତରେ ଲେଖାଇ ପଠାଇ ଦେବି ବୋଲି ସ୍ଥିର କଲି । ମହତାବଙ୍କ ସମ୍ପର୍କରେ ଆଗରୁ ମୁଁ ବହୁତ ଲେଖିଛି । ତାଙ୍କ ଜୀବିତ ଅବସ୍ଥାରେ ତାଙ୍କୁ ଜନ୍ମଦିନ ପାଇଁ ବହୁବାର ଅଭିନନ୍ଦନ ଜଣାଇ କବିତାମାନ ଲେଖି ପଠାଉଥିଲି ଏବଂ ତାଙ୍କ ଠାରୁ ସେଥିପାଇଁ ଧନ୍ୟବାଦ ସୂଚକ ପତ୍ର ମଧ ପାଉଥିଲି । ତାଙ୍କ ଦେହାନ୍ତ ପରେ ପ୍ରାୟ ପ୍ରତ୍ୟେକ ବର୍ଷ ନଭେମ୍ବର ୨୧ ତାରିଖ ଜୟନ୍ତୀ ଓ ଜାନୁଆରୀ ୨ ତାରିଖ ଶ୍ରାଦ୍ଧ ଦିବସ ଉପଲକ୍ଷେ ଲେଖା ପଠାଉଥିଲି ଓ ତାହା ପ୍ରଜାତନ୍ତ୍ର ଅଥବା ତାଙ୍କ ଜୟନ୍ତୀ ସ୍ମରଣିକାରେ ପ୍ରକାଶ ପାଉଥିଲା । କେବଳ ମୁଁ ନୁହେଁ ଆଉ ବହୁ ଲବ୍ଧପ୍ରତିଷ୍ଠ ଲେଖକଙ୍କର ମହତାବଙ୍କ ସମ୍ପର୍କରେ ଅସଂଖ୍ୟ ଲେଖାମାନ ପୁସ୍ତକ ଓ ପତ୍ରପତ୍ରିକାମାନଙ୍କରେ ପ୍ରକାଶିତ ହୋଇଛି ଏବଂ ଆଗାମୀ ବର୍ଷମାନଙ୍କରେ ହେଉଥିବ । କାରଣ ସେ ଯେ ଦୀର୍ଘ ଚଉଠା ଶତାବ୍ଦୀ ଧରି ମହାତ୍ମାଗାନ୍ଧୀଙ୍କର ନେତୃତ୍ୱରେ ପରିଚାଳିତ ଭାରତ ମାତାର ମୁକ୍ତି ସଂଗ୍ରାମରେ ଝାସ ଦେଇଥିଲେ ଏବଂ ରାଜଭୋଗ ଠାରୁ ଆରମ୍ଭ କରି ନିଜର ଗାର୍ହସ୍ଥ୍ୟ ଜୀବନର ସମସ୍ତ ସୁଖ ସ୍ୱଚ୍ଛନ୍ଦ ଓ ଭୋଗ ଲିପ୍ସାକୁ ତ୍ୟାଗକରି ଦେଶ ମାତୃକାର ସେବାପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଦେଇଥିଲେ । ଭାରତ ସ୍ୱାଧୀନତା ପ୍ରାପ୍ତିପରେ ଓଡ଼ିଶାର ତଥା ଭାରତବର୍ଷର ଜଣେ ଅଗ୍ରଣୀ ଜନନାୟକ ଭାବେ ଦେଶ ଓ ଜାତିର ସେବାରେ ନିଜକୁ ନିୟୋଜିତ କରି ରଖିଥିଲେ କେବଳ ସେତିକି

ନୁହେଁ, ଦେଶ ସେବା ସହିତ ଓଡ଼ିଶାର ଐତିହ୍ୟ, ଭାଷା, ସଂସ୍କୃତି, ସମାଜ ସଂସ୍କାର, ସାହିତ୍ୟ, ସାମ୍ବାଦିକତା, ରାଜନୀତି ଠାରୁ ଆରମ୍ଭ କରି କୃଷି, ଶିଳ୍ପ ଓ ବାଣିଜ୍ୟ ଆଦି ସବୁ କ୍ଷେତ୍ରରେ ଓଡ଼ିଶାର ବିକାଶ ସାଧନ ନିମନ୍ତେ ତାଙ୍କର ଅବଦାନ ଅବିସ୍ମରଣୀୟ ଥିଲା । ସେଥିପାଇଁ ସେ ନିଜକୁ ଜଣେ କାଳଜୟୀ ପୁରୁଷ ଭାବେ ପ୍ରତିଷ୍ଠିତ କରିଯାଇଛନ୍ତି ।

ଏବେ ତ ମୁଁ ଭୁବନେଶ୍ୱରରେ ରହୁଛି । ଏଠି ଯୁଆଡ଼େ ଚାହିଁଲେ ସିଆଡ଼େ ମହତାବ ସ୍ୱଦେହରେ ବିଦ୍ୟମାନ ଥିଲାପରି ମୋତେ ଲାଗୁଛି । ଭୁବନେଶ୍ୱରରେ ମୁଁ ଯେଉଁ ଘରେ ରହୁଛି ମୋ ପାଖରେ କାନ୍ଥରେ ଟଙ୍ଗା ହୋଇଥିବା ଓଡ଼ିଶାର ମାନଚିତ୍ର ଉପରେ ଦୃଷ୍ଟିପଡ଼ିବା ମାତ୍ରେ ଆପେ ଆପେ ମନକୁ ଆସିଯାଉଛନ୍ତି ନବ ଉତ୍କଳର ନିର୍ମାତା ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ ମହତାବ । ଓଡ଼ିଶା ଗଡ଼ଜାତ ମିଶ୍ରଣର ପୁରୋଧା ଭାବେ ସେ ଏଇ ନବ ଉତ୍କଳ ଗଢ଼ି ତା'ର ରାଜଧାନୀ ପ୍ରତିଷ୍ଠା କରିଯାଇଛନ୍ତି ଏହି ଭୁବନେଶ୍ୱରରେ ।

ଆଜିକୁ ଦୀର୍ଘ ୨୦୦୦ ବର୍ଷ ପୂର୍ବେ ଏଇ ଭୁବନେଶ୍ୱର ଉପକଣ୍ଠରେ ମଗଧ ସମ୍ରାଟ ଚଣ୍ଡାଶୋକଙ୍କ ହାତରୁ ହିଂସାର ରକ୍ତ ରଞ୍ଜିତ ତରବାରୀ ଖସିପଡ଼ିଥିଲା । କଳିଙ୍ଗର ସ୍ୱାଭିମାନ ରକ୍ଷା ପାଇଁ କଳିଙ୍ଗ ଯୁଦ୍ଧରେ ଲକ୍ଷ ଲକ୍ଷ କଳିଙ୍ଗ ବାସୀଙ୍କ ପ୍ରାଣ ବଳିଦାନରେ ଅନୁତାପ ଦଗ୍ଧ ଚଣ୍ଡାଶୋକଙ୍କ ନିଷ୍ଠୁର ହୃଦୟ ପରିବର୍ତ୍ତିତ ହୋଇ ଅହିଂସାର ମହାବନ୍ୟାରେ ଉଛୁଳି ଉଠିଥିଲା, ଉଦ୍‌ବେଳିତ ହୋଇ ଉଠିଥିଲା ଧଉଳିର ପାଦଦେଶରେ ପ୍ରବାହିତ ସ୍ରୋତସ୍ୱିନୀ ଦୟାନଦୀ । 'ବୁଦ୍ଧଂ ଶରଣଂ ଗଚ୍ଛାମି, ସଂଘଂ ଶରଣଂ ଗଚ୍ଛାମି, ଧର୍ମ ଶରଣଂ ଗଚ୍ଛାମି'- ଏହି ପବିତ୍ର ଧର୍ମ ଧ୍ୱନିର ଝଙ୍କାରରେ ଧଉଳିର ଗାତ୍ର ପ୍ରତିଧ୍ୱନିତ ହୋଇଉଠିଥିଲା, ଝଙ୍କୃତ ହୋଇ ଉଠିଥିଲା ଧଉଳି ପାଦଦେଶର ବନାନୀ । ଅହିଂସା ବୌଦ୍ଧ ଧର୍ମର ବିଶ୍ୱ-ପ୍ରସାରକ ଧର୍ମାଶୋକ ଏହି ଧଉଳି ପାହାଡ଼ ଗାତ୍ରରେ ବିଶ୍ୱବାସୀଙ୍କ ଉଦ୍ଦେଶ୍ୟରେ ଲିପିବଦ୍ଧ କରି ଦେଇଗଲେ ମହାମାନବିକତାର ପ୍ରତୀକ ରୂପେ ଯୁଦ୍ଧବିଧ୍ୱସ୍ତ କଳିଙ୍ଗବାସୀଙ୍କ ନିମନ୍ତେ ଶାନ୍ତି, ସାନ୍ତ୍ୱନା ଓ ସୌହାର୍ଦ୍ଦ୍ୟର ବାର୍ତ୍ତା । ଏହି ଭୁବନେଶ୍ୱର ଉପକଣ୍ଠରେ ପ୍ରତିଷ୍ଠିତ ପ୍ରାଚୀନ କଳିଙ୍ଗର ରାଜଧାନୀ କଳିଙ୍ଗ ନଗରୀରେ କଳିଙ୍ଗ ସମ୍ରାଟ ଦିଗ୍‌ବିଜୟୀ ଖାରବେଳ । କଳିଙ୍ଗର ସ୍ୱାଭିମାନ ପ୍ରତିଷ୍ଠା କ୍ଷେତ୍ରରେ କାଳଜୟୀ ଐତିହ୍ୟ ସୃଷ୍ଟି କରି ତାଙ୍କ ରାଜତ୍ୱର ଗୌରବମୟ ଗାଥା ଲେଖିଦେଇଗଲେ ଉଦୟଗିରିର ହାତୀ ଗୁମ୍ଫାରେ । ପୁଣି ଏଇ ଭୁବନେଶ୍ୱରରେ ଉତ୍କଳର ସୋମବଂଶ ବା କେଶରୀ ବଂଶର ରାଜାମାନେ କଳାକାଳ ପାଇଁ ସାଇତି ରଖିଗଲେ ସେମାନଙ୍କର ଅକ୍ଷୟ କୀର୍ତ୍ତିର ସମ୍ଭାର । ସେଦିନ ଅତୀତ ହୋଇଯାଇଛି କିନ୍ତୁ ସେହି ଇତିହାସ ହଜିନାହିଁ । ଇତିହାସ ସାଇତି ରଖିଛି ଉତ୍କଳର ହଜିଲା ଅତୀତର ସେହି ଗୌରବମୟ ଗାଥାକୁ ।

ଡକ୍ଟର ହରେକୃଷ୍ଣ-ମହତାବ, ଇତିହାସର ଗଭୀର ଗହ୍ୱର ଭିତରୁ ସେଇ ହଜିଲା ଅତୀତକୁ ଉଦ୍ଧାର କରି ନିଜ ହାତଗଢ଼ା ନବ ଉତ୍କଳର ରାଜଧାନୀ ରୂପରେ ନୂଆ ରୂପ ଦେଇ ଗଢ଼ିଦେଲେ । ବସ୍ତୁତଃ, ସେହି ଯୋଗଜନ୍ମା, ଯୁଗଜୟୀ ପୁରୁଷ ଓଡ଼ିଶା ଓ ଓଡ଼ିଆ ଜାତି ପାଇଁ ଇତିହାସର ଇତିହାସ ହୋଇ କାଳକାଳ ପାଇଁ ରହିଗଲେ । କଟକ ସହର ମନେ ରଖିଛି ଶହ ଶହ ବର୍ଷ ପାଇଁ କଟକରେ ଉତ୍କଳର ରାଜଧାନୀ ସ୍ଥାପୟିତା ଗଙ୍ଗବଂଶର ରାଜା ଅନଙ୍ଗଭୀମ ଦେବଙ୍କୁ । ବାରବାଟି ଦୁର୍ଗ ମନେରଖିଛି ଶହ ଶହ ବର୍ଷ ଧରି ବାରବାଟି ଦୁର୍ଗର ନବତଲ ପ୍ରସାଦ ନିର୍ମାତା ଚାଲୁକ୍ୟ ମୁକୁନ୍ଦ ଦେବଙ୍କୁ ସେହିପରି ଓଡ଼ିଶା ଆଉ ଭୁବନେଶ୍ୱର ଇତିହାସ ପୁରୁଷ ଡକ୍ଟର ହରେକୃଷ୍ଣ ମହତାବଙ୍କୁ ସବୁଦିନ ପାଇଁ ମନେରଖିବ ।



# କୁଶଳୀ ରାଜନୀତିଜ୍ଞ ଡକ୍ଟର ମହତାବ

**ଗଗନ ଚନ୍ଦ୍ର ମେହେର**

ଓଡ଼ିଶାର ରାଜନୈତିକ ଆକାଶରେ ଡକ୍ଟର ହରେକୃଷ୍ଣ ମହତାବ ଏକ ଅନନ୍ୟ ଉଜ୍ଜ୍ୱଳ ଜ୍ୟୋତିଷ୍କ । ବହୁଗୁଣରେ ଅଧିକାରୀ ଏଇ କୁଶଳୀ ରାଜନୀତିଜ୍ଞ ତା ୨୧.୧୧.୧୮୯୯ ମସିହାରେ ଭଦ୍ରକର ଆଗରପଡ଼ାଠାରେ ଜନ୍ମଗ୍ରହଣ କରି ବହୁବର୍ଷ ଓଡ଼ିଶାର ଜନଜୀବନକୁ ପ୍ରଭାବିତ କରି ଆସିଥିଲେ । ଯଥା ସମୟରେ ବିଦ୍ୟାଳୟ ଶିକ୍ଷା ସମାପ୍ତ କରି କଟକର ରେଭେନ୍‌ସା ମହାବିଦ୍ୟାଳୟରେ ସ୍ନାତକ ଶ୍ରେଣୀରେ ଅଧ୍ୟୟନ କରୁଥିବାବେଳେ ମହାମାନବ ମହାତ୍ମା ଗାନ୍ଧୀଙ୍କ ଆହ୍ୱାନରେ ଅଧ୍ୟୟନ ତ୍ୟାଗକରି ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେଲେ ଓ ରାଜନୀତିର କଣ୍ଟକିତ ପଥରେ ସେ ଏପରି ମାଡ଼ିଚାଲିଲେ ଯେ ଆଉ ସେ କେବେ ପଛକୁ ଫେରି ଚାହିଁ ନଥିଲେ । ଗାନ୍ଧିଜୀଙ୍କ ଆଦର୍ଶରେ ଅନୁପ୍ରାଣିତ ଓଡ଼ିଶାରେ କଂଗ୍ରେସର ସେ ମୁଖିଆ ନେତା ଭାବେ କାନ୍ଧକୁ କାନ୍ଧ ମିଳାଇ ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ଓ ମୌଲାନା ଆବୁଲ କାଲାମ ଆଜାଦଙ୍କ ଭଳି ସର୍ବଭାରତୀୟ ନେତାମାନଙ୍କ ସହ କାର୍ଯ୍ୟ କରୁଥିଲେ । କଂଗ୍ରେସର ସର୍ବୋଚ୍ଚ ନୀତି ନିର୍ଦ୍ଧାରଣ ସଂସ୍ଥା କଂଗ୍ରେସ କାର୍ଯ୍ୟକାରୀ କମିଟିର ବହୁଦିନ ଧରି ସଦସ୍ୟ ମଧ୍ୟ ଥିଲେ ।

ଭାରତ ସ୍ୱାଧୀନ ହେବାର ବର୍ଷକ ପୂର୍ବରୁ ପଣ୍ଡିତ ଜବାହରଲାଲ ନେହେରୁଙ୍କ ନେତୃତ୍ୱରେ କେନ୍ଦ୍ରରେ ଏକ ମନ୍ତ୍ରିମଣ୍ଡଳ ଗଠିତ ହେବାପରେ ଓଡ଼ିଶାରେ ଡକ୍ଟର ମହତାବଙ୍କ ନେତୃତ୍ୱରେ ମନ୍ତ୍ରିମଣ୍ଡଳ ଗଠିତ ହୋଇଥିଲା ଓ ସେଇ ସମୟରେ ତୀକ୍ଷ୍ଣ ଦୂରଦୃଷ୍ଟିସଂପନ୍ନ ମହତାବବାବୁ ଭୁବନେଶ୍ୱରରେ ନୂଆ ରାଜଧାନୀ ପ୍ରତିଷ୍ଠା ପାଇଁ ଓଡ଼ିଶା ବିଧାନସଭାରେ ପ୍ରସ୍ତାବ ମଞ୍ଜୁର କରାଇ ନେଇଥିଲେ । ଆଜିର ଏ ଯେଉଁ ବିଶାଳ ସଚିବାଳୟ ରାଜଧାନୀର ବୁକୁଚିରି ସଦର୍ପେ ଦଣ୍ଡାୟମାନ ତାହା ତାଙ୍କରି ହିଁ ଅବଦାନ । ତାଙ୍କ ଜୀବନକାଳ ଭିତରେ ତାଙ୍କର ଆଉ ଏକ ବଡ଼ କାର୍ଯ୍ୟ ହେଲା ସେତେବେଳକାର ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ସହ ମିଶି ଦେଶୀୟ ରାଜ୍ୟଗୁଡ଼ିକୁ ଭାରତ ସହ ମିଶ୍ରଣ କରାଇବା ଓ ତହିଁର ଆଦ୍ୟପର୍ବ ସ୍ୱରୂପ ଓଡ଼ିଶାର ଗଡ଼ଜାତ ରାଜ୍ୟଗୁଡ଼ିକ ଓଡ଼ିଶା ସହ ମିଶି ୧୩ଟି ଜିଲ୍ଲାରେ ପରିଣତ ହେବା । ଆଜି କଟକର ଉଚ୍ଚ ନ୍ୟାୟାଳୟ ସଂଲଗ୍ନ ଯେଉଁ ବୃହତ୍ ଶିଶୁ ଚିକିତ୍ସା କେନ୍ଦ୍ରଟି ଅବସ୍ଥିତ ତାହା ଦିନେ ଇଂରେଜ ଶାସନ କାଳରେ 'ଗଭର୍ଣ୍ଣର ହାଉସ' ଥିଲା ଓ ୧୯୪୮ ମସିହାରେ ସେଠାକୁ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ଆସିଥିଲେ ଓ ଡକ୍ଟର ମହତାବଙ୍କ ସହ ଆଲୋଚନା ପରେ ସେଇ ଘରେ ଓଡ଼ିଶା ଗଡ଼ଜାତ ମିଶ୍ରଣର ଖସଡ଼ା ପ୍ରସ୍ତୁତ ହୋଇଥିଲା ଓ ବଲ୍ଲଭଭାଇ ପଟେଲଙ୍କ ସେଇ ରହଣୀ ସ୍ମୃତିକୁ ବହନ କରି ଏବେ ତାହା 'ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ ସ୍ନାତକୋତର ଶିଶୁ ଚିକିତ୍ସା ପ୍ରତିଷ୍ଠାନ'

ନାମରେ ଖ୍ୟାତ ବା ରାଜ୍ୟବାସୀଙ୍କ ନିକଟରେ ଶିଶୁଭବନ ଭାବରେ ପରିଚିତ । ଦେଶ ସ୍ୱାଧୀନ ହେବାପରେ ଡକ୍ଟର ମହତାବ ନେହେରୁଙ୍କ କ୍ୟାବିନେଟରେ ଓଡ଼ିଶାରୁ ପ୍ରଥମଥର ପାଇଁ ଜଣେ ବରିଷ୍ଠ ସଦସ୍ୟ ଥାଇ ଓଡ଼ିଶାର ଉନ୍ନତିର ସ୍ୱପ୍ନ ଦେଖୁଥିବାବେଳେ ରାଜନୀତିର ଅନ୍ଧଗଳିରେ ଛନ୍ଦି ହେଇ କ୍ୟାବିନେଟରୁ ବିଦାୟ ନେଇ ବହୁଦିନ ସେ ଅବିଭକ୍ତ ବମ୍ବେ ପ୍ରଦେଶର ଗଭର୍ଣ୍ଣର ହୋଇ ରହିଯାଇଥିଲେ । କିନ୍ତୁ ପରେ ସେ ଓଡ଼ିଶାକୁ ପ୍ରତ୍ୟାବର୍ତ୍ତନ କରି ପୁନଶ୍ଚ ସକ୍ରିୟ ରାଜନୀତିରେ ଆବିର୍ଭୂତ ହେଲେ ଓ ଜୀବନର ଶେଷ ପର୍ଯ୍ୟନ୍ତ ସେଇଥିରେ ସେ ଚଳଚଞ୍ଚଳ ରହିଥିଲେ । ଏକଦା ପଣ୍ଡିତ ଜବାହରଲାଲ ନେହେରୁ ଲୋକସଭାରେ ନେତାଥିବାବେଳେ ଡକ୍ଟର ମହତାବ ଉପନେତା ଥିଲେ ଓ ତାଙ୍କର କାର୍ଯ୍ୟକରିବା ପ୍ରଣାଳୀ ଏକ ସ୍ୱତନ୍ତ୍ର ଧରଣର ଥିଲା । ଓଡ଼ିଶା ରାଜନୀତିରେ ଥିଲାବେଳେ ଓଡ଼ିଶାରେ ଏମିତି କେହି ନଥିଲେ ଯିଏ କି ଡକ୍ଟର ମହତାବଙ୍କୁ ଶ୍ରଦ୍ଧା ଓ ସମ୍ମାନ କରୁ ନଥିଲେ । ସେ ଥିଲେ ବହୁ ନେତାଙ୍କ ରାଜନୈତିକ ଗୁରୁ । ତାଙ୍କର ରାଜନୈତିକ ଜୀବନକୁ ଛାଡ଼ିଦେଲେ ସେ ଏକାଧାରରେ ଥିଲେ ସାମ୍ବାଦିକ, ସାରସ୍ୱତ ସାଧକ, ଐତିହାସିକ, ସମାଜସେବକ, ସଂଗଠକ ଇତ୍ୟାଦି ଇତ୍ୟାଦି । ଓଡ଼ିଆ ସମ୍ବାଦର ପ୍ରସାର ଲାଗି ସେ ପ୍ରତିଷ୍ଠା କରିଥିଲେ ତାଙ୍କର ଅମର କୃତି 'ପ୍ରଜାତନ୍ତ୍ର' ଓ ଓଡ଼ିଆ ସାହିତ୍ୟର ସମୃଦ୍ଧି ପାଇଁ ପ୍ରକାଶ କରିଥିଲେ 'ଝଙ୍କାର' ଇତ୍ୟାଦି ଆଉ କେତୋଟି ଆନୁଷଙ୍ଗିକ ସାହିତ୍ୟ ପତ୍ରିକା ଯାହାକି ଆଜି ପର୍ଯ୍ୟନ୍ତ ସେଗୁଡ଼ିକ ସମୃଦ୍ଧ ହୋଇ ଓଡ଼ିଆ ସାହିତ୍ୟର ଜୟଗାଥା ଗାନକରି ଆସୁଛି । ଏ ସବୁଛଡ଼ା ତାଙ୍କ ସ୍ୱକୀୟ ରଚନା 'ଟାଉଟର', 'ପ୍ରତିଭା', 'ଅବ୍ୟାପାର' 'ସାଧନାର ପଥେ', 'ଆରବ ସାଗରରୁ ଚିଲିକା' ଓ ସର୍ବୋପରି ଗାଁ ମଜ୍‌ଲିସ୍ ପ୍ରଭୃତି ବହୁଳ ଭାବେ ଆଦୃତ ଓ ପ୍ରସାରିତ । ସେ ଆରମ୍ଭ କରିଥିବା ବାର୍ଷିକ 'ବିଷୁବ ସାହିତ୍ୟ ମିଳନ'ରେ ଆଜି ବି ବହୁ ସାରସ୍ୱତ ସାଧକ ତାଙ୍କର ସ୍ମୃତିଚାରଣ କରନ୍ତି । ସବୁଠୁଁ ବିସ୍ମୟର କଥା ଯେ ସେ ଜଣେ ନିୟମିତ ଐତିହାସିକ ନ ହୋଇ ମଧ କାରାଜୀବନ କାଳରେ ସହଯୋଗୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଜିଜ୍ଞାସାରେ ଉଦ୍‌ବୁଦ୍ଧ ହୋଇ ସେ ଯେଉଁ 'ଓଡ଼ିଶା ଇତିହାସ' ରଚନା କରିଥିଲେ ଏବେ ବି ତାହା ଅତୁଳନୀୟ ।

ଓଡ଼ିଶାର ଜନଜୀବନକୁ ଚିହ୍ନିବାରେ ଡକ୍ଟର ମହତାବଙ୍କ ଭଳି ନେତା ଖୁବ୍ ବିରଳ । କନିକା ପ୍ରଜା ଆନ୍ଦୋଳନ କଥା ସ୍ମରଣ କଲେ ମହତାବଙ୍କ ସ୍ମୃତି ଆପେ ଆପେ ମନକୁ ଚାଲିଆସେ । ଜୀବନର ସାୟଂ କାଳରେ ମଧ କର୍ମ ତତ୍‌ପରତାରୁ ସେ ବିରତ ନଥିଲେ । 'ପ୍ରଜାତନ୍ତ୍ର' ପୃଷ୍ଠାରେ 'ଗାଁ ମଜ୍‌ଲିସ' ଲେଖି ଲେଖି ହାତ ତାଙ୍କର ଶିଥିଳ ହୋଇ ପଡ଼ିଥିଲା; ତଥାପି ସେ ଓଡ଼ିଶାର ଏକ ନିର୍ମମ କୁସଂସ୍କାର ଦେବୀପୀଠରେ ବଳିପ୍ରଥାକୁ ବିରୋଧ କରି 'ଗାଁ ମଜ୍‌ଲିସ'ରେ ତାଙ୍କ କଲମ ଅସ୍ତ୍ର ଚଳାଇଲେ । ପରେ ପରେ ତାହା ଏକ ଜନ ଆନ୍ଦୋଳନରେ ପରିଣତ ହେଲା ଓ ସାରା ଓଡ଼ିଶାର ଅନେକ ଦେବଦେବୀ ପୀଠରେ ବଳିପ୍ରଥା ବନ୍ଦ ହୋଇ ଏକ ପବିତ୍ର ଧର୍ମଭାବର ମହତବାଣୀ ପ୍ରଚାରିତ ହେଲା । ଯଦିଓ ଏବେ ସୁଦ୍ଧା କେଉଁଠି କେମିତି ଏ ବଳି ପ୍ରଥା ପ୍ରଚଳିତ ହେଉଛି ତଥାପି ସେଠାକାର ମୁଖିଆମାନେ ଏକତ୍ର ହୋଇ ଯଦି ଡକ୍ଟର ମହତାବଙ୍କର ଆହ୍ୱାନକୁ ଭିତ୍ତିକରି ବଳିପ୍ରଥା ବନ୍ଦ କରିବାକୁ ଉଦ୍ୟମ କରନ୍ତେ ତାହା ଡକ୍ଟର ମହତାବଙ୍କ ପ୍ରତି ତାଙ୍କ ଜନ୍ମଦିନର ଏକ ଶ୍ରେଷ୍ଠ ସମ୍ମାନ ହୁଅନ୍ତା ।

*ଆଡଭୋକେଟ, କେଶରପୁର,*
*ମହାନ୍ତିଲେନ୍, କଟକ*



# କାକା ମହତାବ୍ ଜିନ୍ଦାବାଦ

**ସତ୍ୟନାରାୟଣ ବେହେରା**

**ସେ** ମହତାବ କିଏ ? ''ମୀନା ସେନାତକ ସୈନିକ ହେ ହମ୍, ନୟା ସଂସାର ବନାଏଙ୍ଗେ, ନୟା ଇନ୍‌ସାନ୍ ବନାଏଙ୍ଗେ ।'' ଆଜକୁ ପଇଁଚାଳିଶ ବର୍ଷ ତଳର କଥା । ୧୯୫୭ମସିହା । ବର୍ଷାଦିନ ସେଦିନ ବର୍ଷା ନଥିଲା । ଆକାଶ ତୋଫା ଥିଲା । ଆକାଶରେ ମେଘ ନଥିଲା । ସମଗ୍ର ବଲାଙ୍ଗୀର ସହର ମୀନାଙ୍କର ସଙ୍ଗୀତରେ ଝଙ୍କୃତ ହୋଇ ଗଗନ ପବନ ନିନାଦିତ ହେଉଥାଏ । ଛୋଟ ଛୋଟ ଶିଶୁ, ତରୁଣ ତରୁଣୀ ଉଲ୍ଲସିତ ହେଉଥାନ୍ତି । ଜନଜୀବନରେ ଏକ ଆନନ୍ଦର ଲହରୀ ଖେଳି ଯାଉଥାଏ । ଛକ ସ୍ଥାନମାନଙ୍କରେ ତୋରଣ ଓ ପୂର୍ଣ୍ଣ କୁମ୍ଭ ସ୍ଥାପନ ହୋଇଥାଏ । ରାଜ୍ୟରେ, ସେ ସମୟରେ ସୁଖ୍ୟାତିପ୍ରାପ୍ତ 'ଫୁଲରେଣୁ ମୀନାମଣ୍ଡଳୀ' ଦ୍ୱାରା ବଲାଙ୍ଗୀର ପୃଥ୍ୱୀରାଜ ହାଇସ୍କୁଲ ମଧ୍ୟରେ । ଆମ ସେତେବେଳର ନାୟକ ପ୍ରଫେସର ନାରାୟଣ ପୁରୋହିତ, ପୂର୍ବତନ ବିଧାୟକ ରାଧାକାନ୍ତ ପଣ୍ଡା, ଆମ ସଭାପତି ଡକ୍ଟର ଗୋବିନ୍ଦ ଚନ୍ଦ୍ର ଉଦ୍‌ଗାତା, ଓଡ଼ିଶା ସାହିତ୍ୟ ଏକାଡେମୀର କବି ଶ୍ରୀନିବାସ ଉଦ୍‌ଗାତା, ଅଭ୍ୟର୍ଥନା କମିଟୀ ସଭାପତି ସ୍ୱାଧୀନତା ସଂଗ୍ରାମୀ ସ୍ୱପ୍ନାନନ୍ଦ ପାଣିଗ୍ରାହୀ, ଆଇନଜ୍ଞ ସ୍ୱର୍ଗତ ରଜନୀକାନ୍ତ ଭୋଇ, ସର୍ବଶ୍ରୀ ଆର୍ତ୍ତତ୍ରାଣ ପୁରୋହିତ, ଅନ୍ତର୍ଯ୍ୟାମୀ ମିଶ୍ର, ଜହ୍ନୁରୀଭାଇ ଶ୍ରୀ ରାମପ୍ରସାଦ ମହାନ୍ତି, ନାଟ୍ୟଭୂଷଣ ଜଗଦାନନ୍ଦ ଭୋଇ, ସର୍ବଶ୍ରୀ ଆର୍ତ୍ତତ୍ରାଣ ପୁରୋହିତ, ଅନ୍ତର୍ଯ୍ୟାମୀ ମିଶ୍ର, ଜହ୍ନୁରୀ ଭାଇ, ଶ୍ରୀ ରାମପ୍ରସାଦ ମହାନ୍ତି, ନାଟ୍ୟଭୂଷଣ ଜଗଦାନନ୍ଦ ଛୁରିଆ ପ୍ରମୁଖ ଆୟୋଜନ ସଫଳତା ପାଇଁ ବ୍ୟସ୍ତ ହେଉଥିଲେ ।

ବର୍ତ୍ତମାନ ପରି ନୁହଁ । ଏବେ, ମୁଖ୍ୟମନ୍ତ୍ରୀ ଗସ୍ତରେ ଆସିଲେ, ସେ ସ୍ଥାନଟି ସୈନ୍ୟ ଛାଉଣିରେ ପରିଣତ ହୋଇଯାଉଛି । ସୁରକ୍ଷା ବ୍ୟବସ୍ଥା କାହିଁରେ କ'ଣ । ପୋଲିସ ବାହିନୀ ପରେ, ଗୁର୍ଖା, ଜାଠ୍, ସୈନ୍ୟବାହିନୀର ସୁରକ୍ଷା ବଳୟରେ ମୁଖ୍ୟମନ୍ତ୍ରୀ । ତହିଁରେ ପୁଣି, ସାଦା ପୋଷାକରେ ପୋଲିସ ପଇଁତରା । ପୋଲିସ ବିହୀନ ଉତ୍ସବସ୍ଥଳୀକୁ ମୀନାବଜାର ପ୍ରତିଷ୍ଠାତା ତଥା ପୂଜ୍ୟକାକା ତତ୍କାଳୀନ ମୁଖ୍ୟମନ୍ତ୍ରୀ ଉତ୍କଳ କେଶରୀ ଡକ୍ଟର ହରେକୃଷ୍ଣ

ମହତାବ ସର୍କିଟ୍ ହାଉସକୁ ଆସିଲେ । ଆସିବା ବାଟରେ ହଠାତ୍ ଆମେ ଦେଖିଲୁ, ଗାଡି କେଉଁଆଡ଼େ ଅଦୃଶ୍ୟ ହୋଇଯାଇଛି । ଆମେ ଭାବିଲୁ, କଲେକ୍ଟରିଏଟ୍ ବା ଆଉ କେଉଁଆଡ଼େ ଯାଇଥିବେ । ଶ୍ରୀ ଜଗନ୍ନାଥ ପଡାରେ ପିଲାମାନେ ସୁନ୍ଦର ତୋରଣଟିଏ ନିର୍ମାଣ କରି, ପାଟିତୁଣ୍ଡ କରି ବ୍ୟାନରଟିଏ ଝୁଲାଇବାରେ ବ୍ୟସ୍ତ । ଏ ସମୟରେ ଭ୍ୟାନଟିଏ ଆସି ଅଟକିଗଲା । ଭ୍ୟାନ୍‌ଭିତରୁ ହୃଷ୍ଟପୁଷ୍ଟ ସୌମ୍ୟଦର୍ଶନ ବୟସ୍କ ପୁରୁଷ ଜଣେ ଓହ୍ଲାଇଲେ । ସେ ପିଲାଙ୍କୁ ପଚାରିଲେ ''କ'ଣ କରୁଛ ?'' ''ଆମେ ବ୍ୟାନର ବାନ୍ଧୁଛୁ'' - ପିଲାଏ ଉତର ଦେଲେ, ''ଆମ କକା ମହତାବ ଆସିବେ'' । ''ସେ କିଏ ?'' - ପୁଣି ସେ ପଚାରିଲେ । ପିଲାଏ କହିଲେ, ''ତୁମେ ଜାଣିନ ତାଙ୍କୁ । ସେ ହେଉଛନ୍ତି, ଆମ ମୀନାବଜାରର ପ୍ରତିଷ୍ଠାତା । ଆମ ସଭିଙ୍କ କାକା । ଆମ ରାଇଜର ମୁଖ୍ୟମନ୍ତ୍ରୀ ।'' ପୁଣି ସେ ପିଲାଙ୍କୁ ପଚାରିଲେ, ''ତୁମେ ତାଙ୍କୁ ଦେଖିଛ ?'' ପିଲାଏ ଗମ୍ଭୀର ହୋଇଗଲେ । ଥୋକେ ନିରବତା ଭଙ୍ଗ କରି କହିଲେ, ''ନା, ଆମେ ଦେଖିନୁ ।'' ସୌମ୍ୟଦର୍ଶନ ବ୍ୟକ୍ତିଜଣକ ନିଜେ ହସିଲେ । ଆଉ କହିଲେ, ''ହଉ ହଉ, ମୁଁ ତୁମର କାକା । ଆସ, ଯିବା ।'' ପିଲାଙ୍କୁ କେତେ କଥା କହିଲେ । ପିଲାଙ୍କର କେତେକଥା ବୁଝିଲେ । ଆଉ ଭ୍ୟାନ୍‌ରେ ଚଢ଼ିଲେ ନାହିଁ । ପିଲାଙ୍କ ସାଙ୍ଗରେ ଚାଲି ଚାଲି ଉତ୍ସବସ୍ଥଳୀକୁ ଚାଲିଲେ । ପିଲାଙ୍କ ଗହଳି ସାଙ୍ଗକୁ ଜନଗହଳି ସେ ସ୍ଥାନରେ ବଢ଼ିଗଲା । ତା'ପରେ ଆମ ପିଲାଙ୍କର କୋମଳ କଣ୍ଠରେ ଆନନ୍ଦର ଧ୍ୱନି ନିନାଦିତ ହେଉଥିଲା, ''କାକା ମହତାବ, ଜିନ୍ଦାବାଦ !'' ବାର୍ତ୍ତାଶେଷ ।

ସେଦିନର ସେହି କୁନି କୁନି ମୀନାମୀନିମାନେ ଆଜି ସମାଜରେ ବେଶ୍ ସୁପ୍ରତିଷ୍ଠିତ । ଏହା ସମ୍ଭବ ହେଉଛି ସାଧନା ଓ ସୁକର୍ମ କରି ବଡ଼ ହେବା ନିମନ୍ତେ କାକା ମହତାବଙ୍କର ଆଶୀର୍ବାଦ ଯୋଗୁ ।

*କେନ୍ଦ୍ରମୀନା, ପୂର୍ବତନ ନାୟକ,*

*ଫୁଲରେଣୁ ମୀନାମଣ୍ଡଳୀ, ବଲାଙ୍ଗୀର*



# ଏକବିଂଶ ଶତାବ୍ଦୀରେ ମହତାବଙ୍କୁ ଖୋଜୁଛୁ ଆମେ

ନଟବର ଖୁଣ୍ଟିଆ

ବିଂଶ ଶତାବ୍ଦୀ ସମଗ୍ର ବିଶ୍ୱ ପକ୍ଷରେ ଏ ପର୍ଯ୍ୟନ୍ତ ସବୁଠାରୁ ସ୍ମରଣୀୟ ଶତାବ୍ଦୀ ହୋଇ ରହିଆସିଥିବା ବେଳେ ଓଡ଼ିଶା ପକ୍ଷରେ ଏହାର ଗୁରୁତ୍ୱ ସୀମାହୀନ ଥିଲା କହିଲେ ଅତ୍ୟୁକ୍ତି ହେବନାହିଁ । ଏକଦା ସମଗ୍ର ଭାରତବର୍ଷରେ କାହିଁକି ଏସିଆ ମହାଦେଶରେ ଶୀର୍ଷରେ ଥିବା ଓଡ଼ିଶା ଯାହାକୁ କଳିଙ୍ଗ, ଉତ୍କଳ ଆଦି କୁହାଯାଉଥିଲା, ଊନବିଂଶ ଶତାବ୍ଦୀର ଶେଷ ବେଳକୁ ଘୋର ଅନ୍ଧକାରରେ ବାଟବଣା ହୋଇ ନିଜର ସତ୍ତା ହରାଇଲା ବେଳକୁ ମଧୁବାବୁଙ୍କ ପରି ନେତୃତ୍ୱ ଜନ୍ମ ନେଇ ନିଜର ଜନ୍ମମାଟି ପ୍ରତି ଅହେତୁକ ମମତା ଓ ଉଚ୍ଚକୋଟୀର ପ୍ରତିଭା ବଳରେ ଓଡ଼ିଶାକୁ ସେହି ଅନ୍ଧକାର ପଥରୁ ଆଲୋକପଥକୁ ଫେରାଇ ଆଣିଥିଲେ । ତାଙ୍କୁ ଯଥାର୍ଥରେ ଶତାବ୍ଦୀର ସୂର୍ଯ୍ୟ କୁହାଯାଇଛି । ଓଡ଼ିଶା ପୁନଶ୍ଚ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହେଲା ଓ ପରେ ପରେ ଦେଶ ସ୍ୱାଧୀନ ହେଲା । ନବ ଓଡ଼ିଶାର ପୁନର୍ଗଠନ ପର୍ବ ଆରମ୍ଭ ହେଲା । ଓଡ଼ିଶାର ଏହି ପୁନର୍ଗଠନ ପର୍ବ କୁହନ୍ତୁ ବା ଆନ୍ଦୋଳନ କୁହନ୍ତୁ ଅବା କୁରୁକ୍ଷେତ୍ର କୁହନ୍ତୁ, ସେଥିରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ଭୂମିକା ଥିଲା ଗୁରୁ ଦ୍ରୋଣାଚାର୍ଯ୍ୟଙ୍କ ସଦୃଶ । ନବ ଓଡ଼ିଶାର ଯେଉଁ ନବନିର୍ମାଣ ଆରମ୍ଭ ହେଲା ସେହି ନିର୍ମାଣରେ ଅନେକ ସ୍ଥପତି ଯୋଗଦାନ କରି ନିର୍ମାଣକାର୍ଯ୍ୟକୁ ତ୍ୱରାନ୍ୱିତ କଲେ ଆଉ ସେହି ସ୍ଥପତିମାନଙ୍କର ଗୁରୁ ବା ଦିଗ୍‌ଦର୍ଶକ ଥିଲେ ଡକ୍ଟର ମହତାବ । ଗୋଟିଏ ରାଷ୍ଟ୍ର ବା ଜାତିର ନିର୍ମାଣ ସଫଳ ହୁଏ ଯେତେବେଳେ ତା'ର ସାମଗ୍ରିକ ଓ ସମନ୍ୱିତ ବିକାଶ ହୁଏ । ତା'ର ଇତିହାସ, ଶିକ୍ଷା, ସାହିତ୍ୟ, ଭାଷା, ସଂସ୍କୃତି, କ୍ରୀଡ଼ା, ରାଜନୀତି, ଅର୍ଥନୀତି ଆଦି ସାମଗ୍ରିକ ବିକାଶ ଅତ୍ୟନ୍ତ ଜରୁରୀ ହୋଇପଡ଼େ । ରାଜ୍ୟ ପୁନର୍ଗଠନ ହେବା ପରେ ଓ ବିଶେଷକରି ଦେଶ ସ୍ୱାଧୀନ ହେବା ପରେ ଓଡ଼ିଶାର ଯେଉଁ

ପୁନଃନିର୍ମାଣ ଆରମ୍ଭ ହେଲା, ସେଥିରେ ଡକ୍ଟର ହରେକୃଷ୍ଣ ମହତାବଙ୍କ ପରି ବହୁମୁଖୀ ବ୍ୟକ୍ତିତ୍ୱ ନେତୃତ୍ୱ ନେଲେ । ତାଙ୍କରି ବ୍ୟକ୍ତିତ୍ୱରେ ଥିଲା ଅଲୌକିକ ଶକ୍ତି । ରାଜ୍ୟ ଶାସନ ମୁଖ୍ୟ ଥା'ନ୍ତୁ ବା ନ ଥା'ନ୍ତୁ ମହତାବଙ୍କ ଦିଗ୍‌ଦର୍ଶନକୁ ସମସ୍ତେ ଚାହିଁ ରହୁଥିଲେ, ସେ ଥିଲେ ପଥପ୍ରଦର୍ଶକ । ସବୁ କ୍ଷେତ୍ରରେ ।

ସମ୍ବାଦପତ୍ର ଓ ପତ୍ରପତ୍ରିକା ଗୋଟିଏ ଜାତିକୁ ଗଠନ କରିବାରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥାଏ । ଯେଉଁ ରାଜ୍ୟର ସମ୍ବାଦପତ୍ର ଓ ପତ୍ରପତ୍ରିକା ଯେତେ ଉନ୍ନତ ମାନର, ସେ ଜାତି ସେତେ ବିକଶିତ । ସମ୍ବାଦପତ୍ର କେବଳ ବ୍ୟାବସାୟିକ ଦୃଷ୍ଟିରୁ ଅର୍ଥ ସଂଗ୍ରହର ମାଧ୍ୟମ ହୋଇ ନ ରହି ଜାତି ଗଠନରେ ସାହାଯ୍ୟ କରିବା ଆବଶ୍ୟକ । ଡକ୍ଟର ମହତାବ ଏକଥା ଉପଲବ୍ଧି କରି 'ପ୍ରଜାତନ୍ତ୍ର' ଦୈନିକ ସମ୍ବାଦପତ୍ର ସାଙ୍ଗକୁ ଭାଷା ଓ ସାହିତ୍ୟର ବିକାଶ ପାଇଁ 'ଝଙ୍କାର' ପତ୍ରିକା ପ୍ରକାଶନ ଆରମ୍ଭ କଲେ । 'ପ୍ରଜାତନ୍ତ୍ର' ମାଧ୍ୟମରେ ସେ କେବଳ ସମ୍ବାଦ ପ୍ରସାର କଲେ ନାହିଁ–ଶିକ୍ଷା, ସାହିତ୍ୟ, ସଂସ୍କୃତି, କଳା, ରାଜନୀତି, ଅର୍ଥନୀତିର ବିକାଶ ପାଇଁ ବିଭିନ୍ନ ଫିଚର୍ ପୃଷ୍ଠା ପ୍ରକାଶ କରି ଓଡ଼ିଆ ପାଠକ ପାଠିକାମାନଙ୍କୁ ନୂତନ ଦିଗ୍‌ଦର୍ଶନ ଦେବା ସହିତ ରୁଚି ବଦଳାଇ ଦେଲେ । ଏବେ ଓଡ଼ିଶାର ସମ୍ବାଦପତ୍ରଗୁଡ଼ିକରେ ବିଭିନ୍ନ ବିଷୟ ଉପରେ ସ୍ତମ୍ଭ ପ୍ରକାଶ ପାଉଛି । କିନ୍ତୁ ଏହି ସ୍ତମ୍ଭ ପ୍ରକାଶ କରିବାରେ ମହତାବ ଥିଲେ ଓଡ଼ିଶାରେ ଦିଗ୍‌ଦର୍ଶକ । ତାଙ୍କ ଲିଖିତ ସ୍ତମ୍ଭ 'ଗାଁ ମଜଲିସ୍' କୌଣସି ନିର୍ଦ୍ଦିଷ୍ଟ ବିଷୟବସ୍ତୁ ଉପରେ ଆଧାରିତ ନ ଥିଲା–ସେଥିରେ ସେ ନିଜ ଅନୁଭୂତି ଓ ଦୂରଦୃଷ୍ଟିକୁ ଆଧାର କରି ଓଡ଼ିଶାର ବିକାଶ ପାଇଁ ରୋଷେଇଘର ସମସ୍ୟା ଠାରୁ ଆରମ୍ଭ କରି ଶିକ୍ଷା, ସାହିତ୍ୟ, ସଂସ୍କୃତି, କୃଷି, ବିଜ୍ଞାନ, ଶିଳ୍ପ, ବାଣିଜ୍ୟ-ବ୍ୟବସାୟ, ରାଜନୀତି, ଅର୍ଥନୀତି ଆଦି ବିଷୟରେ ଅତି ସରଳ ଓ ବୋଧଗମ୍ୟ ଭାଷାରେ ସାଧାରଣ ଲୋକଟିଏ ଯେପରି ବୁଝିପାରିବ ସେହିପରି ଲେଖୁଥିଲେ । ତାଙ୍କ 'ଗାଁ ମଜଲିସ୍'କୁ ପାଠକମାନେ ଚାତକ ପରି ଚାହିଁ ରହୁଥିଲେ । ଆଉ ପ୍ରଜାତନ୍ତ୍ର ଥିଲା ଏକ ମଣିଷଗଢ଼ା କୁମ୍ଭାରଶାଳ । ଏହି ପ୍ରଜାତନ୍ତ୍ରରେ ଅନେକ ସଂଖ୍ୟାରେ ଶିକ୍ଷିତ ଯୁବକମାନେ ପ୍ରଥମେ କାମ ଆରମ୍ଭ କରି ମହତାବଙ୍କ ଦ୍ୱାରା ତାଲିମ୍ ପାଇ ପରେ ଶିକ୍ଷା, ସାହିତ୍ୟ, ରାଜନୀତି, ଶିଳ୍ପ, ବାଣିଜ୍ୟ, ବ୍ୟବସାୟ କ୍ଷେତ୍ରରେ ଓଡ଼ିଶା ରାଜ୍ୟକୁ ଆଗେଇ ନେବାରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲେ । 'ପ୍ରଜାତନ୍ତ୍ର' ଓଡ଼ିଶାର ସାମଗ୍ରିକ ବିକାଶ ପାଇଁ ମଣିଷ ଗଢ଼ିବାରେ ସେତେବେଳେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା, କହିଲେ ଅତ୍ୟୁକ୍ତି ହେବ ନାହିଁ । ଏହା ସମ୍ଭବ ହୋଇଥିଲା ମହତାବଙ୍କ ନେତୃତ୍ୱ ଯୋଗୁଁ । ସେ 'ଝଙ୍କାର' ପରି ଯେଉଁ ସାହିତ୍ୟ ପତ୍ରିକା ପ୍ରକାଶ ସ୍ୱାଧୀନତା ପରେ ଆରମ୍ଭ କରିଥିଲେ, ତା'ର ବିକଳ୍ପ ଏବେ ହେଲାଣି

କି ? ଓଡ଼ିଶାରେ ଲେଖକ, ସାହିତ୍ୟିକ, କବି, କଳାକାର, କ୍ରୀଡ଼ାବିତ୍, ଚିତ୍ରକର ଆଦିଙ୍କର ଏକ ମିଳନ ପର୍ବ ପାଇଁ ଦୂରଦ୍ରଷ୍ଟା ମହତାବ ଯେଉଁ 'ବିଷୁବ ମିଳନ' ସମାବେଶ ଆରମ୍ଭ କରିଥିଲେ, ଭାବବିନିମୟ ପାଇଁ ତାହା ଆଜି ଓଡ଼ିଶାରେ ଏକ ବିଷୁବ ମିଳନ ଆନ୍ଦୋଳନରେ ପରିଣତ ହୋଇଛି ।

ଡକ୍ଟର ମହତାବ ରାଜନୈତିକ ଜୀବନରେ ଅନେକ ସମୟରେ ବିବାଦୀୟ ହୋଇପଡ଼ିଥିଲେ ସୁଦ୍ଧା ତାଙ୍କ ସମୟର ଓଡ଼ିଶାର ଯେକୌଣସି ରାଜନୈତିକ ଦଳର ନେତୃତ୍ୱ ଆବଶ୍ୟକ ବେଳେ ତାଙ୍କର ପରାମର୍ଶ, ଆଶୀର୍ବାଦ, ଦିଗ୍‌ଦର୍ଶନ ଦେବାକୁ କେବେ ଦ୍ୱିଧା ପ୍ରକାଶ କରୁ ନ ଥିଲେ । ସେ ଗୁରୁ ଦ୍ରୋଣଙ୍କ ପରି ତାଙ୍କ ଶିଷ୍ୟ ଯେଉଁ ପଟରେ ଥାଇ ଯୁଦ୍ଧ କରୁଥାଉ ମଧ୍ୟ ସେ ସର୍ବଦା ଶିଷ୍ୟଙ୍କୁ ଉଚିତ୍ ମାର୍ଗ ଦେଖାଇ ଆଶୀର୍ବାଦ କରୁଥିଲେ । ତାଙ୍କର ବ୍ୟକ୍ତିତ୍ୱ ଏପରି ଅପ୍ରତିଦ୍ୱନ୍ଦ୍ୱୀ ଥିଲା ଯେ ତାଙ୍କର ପରାମର୍ଶ ନେବାକୁ ତାଙ୍କ ସମୟର ଯେକୌଣସି ନେତା କେବେ ହେଲେ ହୀନମନ୍ୟତା ପ୍ରଦର୍ଶନ କରୁ ନ ଥିଲେ । ଡକ୍ଟର ମହତାବ ନିଜର ଅଧ୍ୟବସାୟ ବଳରେ ଓଡ଼ିଶାର ଇତିହାସ ଲେଖିଲେ । ସେ ଜଣେ ଐତିହାସିକ ରୂପେ ଆଜି ସର୍ବତ୍ର ପରିଚିତ । ତାଙ୍କ ରଚିତ 'ଓଡ଼ିଶା ଇତିହାସ' ଓଡ଼ିଶାର ଇତିହାସ ଜାଣିବା ପାଇଁ ଆଜି ବି ଏକ ଅମୂଲ୍ୟ ଗ୍ରନ୍ଥ ହୋଇରହିଛି ।

ସରଳ ଭାବରେ ସାଧାରଣ ଲୋକ ବୁଝିପାରିବା ଭଳି ଭାଷାରେ ସାହିତ୍ୟ ସୃଷ୍ଟି କରିବାରେ ମହତାବଙ୍କ ଅବଦାନ ଓଡ଼ିଆ ସାହିତ୍ୟ ଇତିହାସରେ ଅମର ହୋଇରହିବ । ସେ ନାଟକ, କାବ୍ୟ, କବିତା, ଉପନ୍ୟାସ, ଗଳ୍ପ, ଜୀବନୀ, ପ୍ରବନ୍ଧ, ଫିଚର୍ ଆଦି ସାହିତ୍ୟର ସମସ୍ତ ବିଭାଗକୁ ଋଦ୍ଧିମନ୍ତ କରିଯାଇଛନ୍ତି । ତାଙ୍କ ସାହିତ୍ୟ ଜାତି ଗଠନ କରିବାରେ ସହାୟକ ହେଉଥିଲା ଓ ଭବିଷ୍ୟତରେ ମଧ୍ୟ ହେବ ।

ଡକ୍ଟର ମହତାବ କ୍ଷମତାରେ ସୀମିତ ସମୟ ପାଇଁ ଥିଲେ ବି ଜୀବନର ଶେଷ ପର୍ଯ୍ୟନ୍ତ ସେ ଓଡ଼ିଶାର ବିକାଶ ପାଇଁ ସଜାଗ ଥିଲେ । ସେ ଓଡ଼ିଆମାନଙ୍କର ବନ୍ଧୁ, ଦାର୍ଶନିକ ଓ ପଥପ୍ରଦର୍ଶକ ରୂପେ କାର୍ଯ୍ୟ କରୁଥିଲେ । କ୍ଷମତାରେ ଥିବା ବେଳେ ତାଙ୍କର ପରାମର୍ଶ ପାଇଁ ଯେତିକି ଲୋକ ତାଙ୍କ ପାଖକୁ ଯାଉଥିଲେ କ୍ଷମତାରେ ନ ଥିବା ବେଳେ ବୋଧହୁଏ ତା' ଠାରୁ ଅଧିକ ଲୋକ ଯାଉଥିଲେ । ତାଙ୍କର ନିବାସ ଗାଁର ଧୂଳି ଧୂସରିଆ ଚାଷୀ ମୂଲିଆ ଠାରୁ ରାଜ୍ୟର ସର୍ବୋଚ୍ଚ ଆସନରେ ଥିବା ନେତାମାନଙ୍କ ପାଇଁ ଉନ୍ମୁକ୍ତ ଥିଲା । ସେ ସମସ୍ତଙ୍କ କଥା ଶୁଣୁଥିଲେ ଓ ନିଜର ଅନୁଭୂତି, ପଢିଆରା ବଳରେ ଉପଦେଶ ଦେଉଥିଲେ । ତାଙ୍କ ଉପଦେଶ କ୍ଷତବିକ୍ଷତ ଲୋକଟି ପାଇଁ ଔଷଧର ପ୍ରଲେପ ପରି କାମ ଦେଉଥିଲା ।

ଡକ୍ଟର ମହତାବ ଜଣେ ଉଚ୍ଚକୋଟୀର ବୁଦ୍ଧିଜୀବୀ ଓ ଦୂରଦ୍ରଷ୍ଟା ଥିଲେ । ସର୍ଜନାତ୍ମକ ଚିନ୍ତାଧାରାର ସେ ନାୟକ ଥିଲେ । ତାଙ୍କର ମୃତ୍ୟୁର ଅଳ୍ପଦିନ ପୂର୍ବରୁ ସେ 'ପ୍ରଜାତନ୍ତ୍ର ସାପ୍ତାହିକୀ' ପରି ଏକ ସାପ୍ତାହିକ ପତ୍ରିକା ପ୍ରଜାତନ୍ତ୍ର ତରଫରୁ ପ୍ରକାଶ କରି ସାରା ଓଡ଼ିଶାରେ ସାପ୍ତାହିକୀ ପତ୍ରିକା ପ୍ରକାଶନରେ ଏକ ଆନ୍ଦୋଳନ ଆଣିଥିଲେ । ସାପ୍ତାହିକୀ ପତ୍ରିକା ଆଜି ଅନେକ ପ୍ରକାଶ କରୁଛନ୍ତି । ଆଜି ପ୍ରଜାତନ୍ତ୍ର ସାପ୍ତାହିକୀ ଅନେକ ସଂଖ୍ୟାରେ ପ୍ରସାର ହୋଇ ପାଠକ ସଂଖ୍ୟା ଓ ପଠନ ରୁଚି ବୃଦ୍ଧି କରୁଛି । ଏହା ମହତାବଙ୍କ ଯୋଗୁଁ ସମ୍ଭବ ହୋଇଛି କହିଲେ ଅତ୍ୟୁକ୍ତି ହେବନାହିଁ ।

ବିଂଶ ଶତାବ୍ଦୀର ଓଡ଼ିଶାକୁ ସରସ ସୁନ୍ଦର କରି ଗଢ଼ି ତୋଳିବାରେ ଡକ୍ଟର ମହତାବ ଯେଉଁ ପ୍ରମୁଖ ଭୂମିକା ନେଇ ଗୁରୁ ସଦୃଶ କାର୍ଯ୍ୟ କରୁଥିଲେ ଆଜି ଓଡ଼ିଶା ଏକବିଂଶ ଶତାବ୍ଦୀରେ ପହଞ୍ଚିବା ପରେ ଖୋଜୁଛି ଆଉ ଜଣେ ମହତାବଙ୍କୁ, ଯେ' କି ଜଣେ ତାଙ୍କପରି ଗୁରୁ ସଦୃଶ ଓଡ଼ିଶା ଗଠନରେ ବ୍ରତୀ ଥିବା ଯୋଦ୍ଧାମାନଙ୍କୁ ପଥ ଦେଖାଇବ । ଏକବିଂଶ ଶତାବ୍ଦୀରେ ପ୍ରଯୁକ୍ତି ବିଦ୍ୟା ଓ ସୂଚନା ବିଜ୍ଞାନ ଏପରି ବିକଶିତ ହୋଇଛି ଯେ, ତା'ର ସଠିକ୍ ଉପଯୋଗ କଲେ ଗୋଟିଏ ଦେଶ ବା ଜାତି ଅଥବା ରାଜ୍ୟ ନିଜର ବିକାଶ ଘଟାଇପାରିବ । ଏକବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଓଡ଼ିଶାର ରାଜନୈତିକ ଦୃଶ୍ୟପଟ ଯାହା ଆଉ ମହତାବଙ୍କ ପରି ଜଣେ ମୁରବୀ କେଉଁଠି କାହିଁ ଦୃଶ୍ୟମାନ ହେଉ ନ ଥିବାରୁ ପ୍ରଯୁକ୍ତି ବିଦ୍ୟା, ସୂଚନା ବିଜ୍ଞାନ ଓ ବଜାର ଅର୍ଥନୀତି ଯେଉଁ ସୁଯୋଗ ଆଣି ଦେଇଛି ବିକାଶ ପାଇଁ, ଉପଯୁକ୍ତ ପରିଚାଳନା ଓ ଦିଗ୍‌ଦର୍ଶନ ଅଭାବରୁ ତା'ର ସୁଫଳ ଓଡ଼ିଶା ପାଉନାହିଁ । ଓଡ଼ିଶା ବର୍ତ୍ତମାନ ଖୋଜୁଛି ମହତାବଙ୍କୁ । ଏକବିଂଶ ଶତାବ୍ଦୀରେ ଜଣେ 'ମହତାବ' ଶ୍ରୀଜଗନ୍ନାଥ ଆମକୁ କ'ଣ ଦେବେ ନାହିଁ ?

*ଏଚ୍.ଆଇ.ଜି. ୮୦, କାନନ ବିହାର,*
*ଭୁବନେଶ୍ୱର-୩୧*



# ଜନନାୟକ ଡକ୍ଟର ହରେକୃଷ୍ଣ ମହତାବ

**ଅଧ୍ୟାପକ ରମାକାନ୍ତ ରାଉତ**

ମାତୃଭୂମି ପ୍ରତି ସ୍ନେହ ଶ୍ରଦ୍ଧାକୁ ପାଥେୟକରି ରାଜସିକ ସୁଖକୁ ପରିତ୍ୟାଗ କରି ଯେଉଁମାନେ ଜୀବନକୁ ଗଢ଼ିଛନ୍ତି, ଜୀବନର ସରସତାକୁ ଉପଭୋଗ କରିଛନ୍ତି, ମାତୃଭୂମି ଦୁଃଖରେ ଯନ୍ତ୍ରଣା ଭୋଗିଛନ୍ତି ଓ ଗୌରବରେ ଆହ୍ଲାଦିତ ହୋଇଛନ୍ତି, ପୁଣି ଅସୀମ ତ୍ୟାଗ ସ୍ୱୀକାରକରି ଦେଶର ଦେଶବାସୀଙ୍କର ସ୍ୱପ୍ନକୁ ସାକାର କରିବାପାଇଁ ସଂଗ୍ରାମ କରିଛନ୍ତି, ସେମାନଙ୍କ ମଧ୍ୟରୁ ଅନନ୍ୟ ପ୍ରତିଭା ଡକ୍ଟର ହରେକୃଷ୍ଣ ମହତାବ । ସେ ଥିଲେ ବହୁମୁଖୀ ଅପ୍ରତିଦ୍ୱନ୍ଦ୍ୱୀ ପ୍ରତିଭାର ଅଧିକାରୀ । ତାଙ୍କର ଜୀବନ ଶୈଳୀ ସରଳ ଏବଂ ସ୍ୱାବଲମ୍ବୀଶୀଳ ଥିଲା । ଜୀବନଟି ପ୍ରଥମ ପାହାଚରୁ ସେ ଆରମ୍ଭ କରିଛନ୍ତି ସଂଗ୍ରାମ । ୧୦୩ ବର୍ଷତଳେ ସେ ଅବିଭକ୍ତ ବାଲେଶ୍ୱର ଜିଲ୍ଲା ଅଗରପଡ଼ାର ଏକ ରାଜପରିବାରରେ ଜନ୍ମଗ୍ରହଣ କରିଥିଲେ । ଓଡ଼ିଶା ମାଟିରେ ତାଙ୍କର ଜନ୍ମ ଓଡ଼ିଶାର ଗୌରବକୁ ଦ୍ୱିଗୁଣିତ କରିପାରିଥିଲା । ଛାତ୍ରଜୀବନରୁ ତାଙ୍କର ସଂଗ୍ରାମୀ ମନୋଭବ ସମସ୍ତଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରିଥିଲା । ରାଜନୀତି, ସମାଜସେବା ଏବଂ ସାହିତ୍ୟ କ୍ଷେତ୍ରରେ ସେ ସବୁବେଳେ ସକ୍ରିୟ ଅଂଶ ଗ୍ରହଣ କରୁଥିଲେ । ତାଙ୍କ ଜୀବନର ମହନୀୟ ଦିଗ ମଧ୍ୟରୁ ଗୁରୁତ୍ୱପୂର୍ଣ୍ଣ ଦିଗହେଲା ଯେ ସେ ପିଲାଙ୍କ ସହିତ ପିଲା, ଯୁବକଙ୍କ ସହ ଯୁବକ ଏବଂ ବୁଢ଼ାଙ୍କ ସହ ବୁଢ଼ାଭାବେ ଅତି ନିଜର ହୋଇପାରୁଥିଲେ । ସମସ୍ତଙ୍କ ପାଖରେ ସ୍ୱଳ୍ପ ସମୟରେ ଅତିନିକଟତର ହେବାର କୌଶଳକୁ ବେଶ୍ ଭଲଭାବେ ଜଣାଥିଲା । ଏଣୁ ତାଙ୍କର ଅପ୍ରତିଦ୍ୱନ୍ଦ୍ୱୀ ପ୍ରତିଭା ଥିଲା ବର୍ଣ୍ଣଳ ।

ସେ ଆଜି ନାହାନ୍ତି ସତ; ମାତ୍ର ତାଙ୍କର ତ୍ୟାଗପୂତ ମନୋଭାବ ଓ ବିଭିନ୍ନ ଦିଗ ପ୍ରତି ଦିଗ୍‌ଦର୍ଶନ ଏବେବି ଅମରହୋଇ ରହିଛି । ତାଙ୍କର ଅମ୍ଳାନ ପ୍ରତିଭା ଆମ୍ଭମାନଙ୍କ ସ୍ମୃତି ଆଇନାରେ ଅଧିକରୁ ଅଧିକ ଉଜ୍ଜ୍ୱଳିତ ହେଉଛି । ସେ ଥିଲେ ଅନେକ ପ୍ରଥମ ମଧ୍ୟରେ ପ୍ରଥମ । କଂଗ୍ରେସ କାର୍ଯ୍ୟକାରିଣୀ ସମିତିରେ ଓଡ଼ିଶାରୁ ସେ ପ୍ରଥମ ସଭ୍ୟ, ପ୍ରଥମ କେନ୍ଦ୍ରମନ୍ତ୍ରୀ, ପ୍ରଥମ ଓଡ଼ିଆ ରାଜ୍ୟପାଳ, ସ୍ୱାଧୀନ ଦେଶର ପ୍ରଥମ ମୁଖ୍ୟମନ୍ତ୍ରୀ ଇତ୍ୟାଦି ଇତ୍ୟାଦି । ତାଙ୍କର ଅବିରତ ସଂଗ୍ରାମ ସମସ୍ତଙ୍କୁ ସ୍ତମ୍ଭୀଭୂତ କରେ । ଏପରିକି ପରିଣତ ବୟସରେ ମିଶାବନ୍ଦୀ

ଭାବରେ କାରାବରଣ କରିବା, ଜରୁରୀକାଳୀନ ପରିସ୍ଥିତିରେ ଆହ୍ୱାନକୁ ସାମ୍ନା କରିବାରେ ସେ ପଛେଇ ନଥିଲେ ।

ତାଙ୍କ ଲଢୁଆ ମନୋଭାବର ପଟାନ୍ତର ନାହିଁ । ଅନ୍ୟାୟ, ଅନୀତି ବିରୁଦ୍ଧରେ ଦୀର୍ଘଦିନର ତାଙ୍କ ସଂଗ୍ରାମ ଓଡ଼ିଶା ଗଠନ କରିବାରେ ଅନେକ ସହାୟ ହୋଇଛି । ଜାତୀୟ ଜରୁରୀକାଳୀନ ପରିସ୍ଥିତି ସମୟରେ ବାକ୍ ସ୍ୱାଧୀନତା ଉପରେ ଅଙ୍କୁଶ ଓ ମୌଳିକ ଅଧିକାରର ସଂକୋଚନ ପ୍ରତି ସେ ଭ୍ରୂକ୍ଷେପ ନକରି ପ୍ରଜାତନ୍ତ୍ର ମାଧ୍ୟମରେ ତାଙ୍କର ଲେଖନୀ ଚାଳନା ସରକାରଙ୍କ ପ୍ରତି ଆହ୍ୱାନ କାର୍ଯ୍ୟକାରୀ କରିବା ସଙ୍ଗେ ସଙ୍ଗେ ସାଧାରଣ ମଣିଷମାନଙ୍କ ମନରେ ଅସୀମ ସାହସ ପ୍ରତିଷ୍ଠା କରିପାରିଥିଲା । ଏଭଳି ସଂକଟ ମୁହୂର୍ତ୍ତରେ ତାଙ୍କ ଭଳି ଅଗ୍ରଗଣ୍ୟ ନେତାଙ୍କ ସଂଖ୍ୟା ଏବେ ବି ମହଙ୍ଗା ପଡ଼ିଛି । ପ୍ରତ୍ୟେକ ବ୍ୟକ୍ତିଙ୍କ ସମ୍ମୁଖରେ ଦୁର୍ଦ୍ଦିନ ସମୟରେ ସେ ଥିଲେ ସଂକଟମୋଚନ କର୍ତ୍ତା । ଅହିଂସା ପରମ ଧର୍ମରେ ସେ ଥିଲେ ଦୀକ୍ଷିତ । ଭଲ ପାଇ ନିଜର କରିବା ତାଙ୍କର ଧର୍ମ ଏବଂ ଘୃଣାକରି ଦୂରେଇ ନେବା ତାଙ୍କ ପକ୍ଷେ ଥିଲା ବିରାଟ ପାପ । କାହାର କେଉଁ ପ୍ରତିଭା ଲୁକ୍କାୟିତ ହୋଇ ରହିଛି କେଇପଦ କଥାବାର୍ତ୍ତା ମାଧ୍ୟମରେ ସେ ସହଜରେ ବାରିପାରୁଥିଲେ । ପ୍ରତିଭାକୁ ଆପଣେଇ ନେବାରେ ସେ କୌଶଳ ଆଜି ବି ବିରଳ ।

ବିଦେଶୀ ଶାସନର ଭେଦାଭାବଜନିତ ଓ ଭୌଗଳିକ ଏକତାକୁ ଖଣ୍ଡବିଖଣ୍ଡିତ କରିବାର ଷଡ଼ଯନ୍ତ୍ର ପଣ୍ଡ କରିବାର ଉଦ୍ୟମରେ ଜାତୀୟ ସ୍ତରର ଲୌହମାନବ ସର୍ଦ୍ଦାର ବଲ୍ଲଭଭାଇ ପଟେଲ୍ ନେତୃତ୍ୱ ନେଉଥିଲା ବେଳେ ଓଡ଼ିଶାରେ ଡକ୍ଟର ହରେକୃଷ୍ଣ ମହତାବ ଲୌହମାନବର ଭୂମିକାକୁ ବେଶ୍ ସମ୍ପାଦନ କରିପାରିଥିଲେ । ୧୯୪୮ ମସିହାରେ ଓଡ଼ିଶାରେ ଥିବା ଗଡ଼ଜାତ ରାଜ୍ୟ ମିଶ୍ରଣ କରାଇବାରେ ଡକ୍ଟର ମହତାବଙ୍କ ଦାନ ଭାରତ ଇତିହାସ ପୃଷ୍ଠାରେ ସବୁଦିନ ପାଇଁ ଲିପିବଦ୍ଧ ହୋଇ ରହିବ । ଉତ୍କଳୀୟ ବାଣୀପୀଠରେ ତାଙ୍କର ଅନବରତ ସାଧନା ଓ ଗବେଷଣା ସାହିତ୍ୟ ଜଗତକୁ ଋଦ୍ଧିମନ୍ତ କରିଛି । ତାଙ୍କର ଦୈନିକ ମୁଖପତ୍ର 'ପ୍ରଜାତନ୍ତ୍ର'ର ଗାଁ ମଜଲିସ୍ ସ୍ତମ୍ଭରେ ଅତିସରଳଭାଷା ମାଧ୍ୟମରେ ପ୍ରକାଶିତ ହେଉଥିବା ତଥ୍ୟଗୁଡ଼ିକ ପ୍ରାୟ ସମସ୍ତଙ୍କ ମନକୁ ଛୁଇଁ ପାରିଥିଲା । ସେ ସ୍ତମ୍ଭକୁ ଯିଏ ଥରେ ପାଠ କରିଛି ତାହା ତାଙ୍କ ମନରୁ କେବେହେଲେ ପୋଛି ହେବ ନାହିଁ । ଗାଉଁଲି ଭାଷାରେ ପାନଦୋକାନରୁ ପାର୍ଲିଆମେଣ୍ଟ ପର୍ଯ୍ୟନ୍ତ ସମସ୍ତଙ୍କୁ ସେଥିରେ ସାମିଲ କରାଯାଇପାରୁଥିଲା ।

ସାହିତ୍ୟ ସୃଷ୍ଟିରେ ସେ ଥିଲେ ଅଗ୍ରଜ । ଲୁକ୍କାୟିତ ପ୍ରତିଭାକୁ ବିକଶିତ କରିବାପାଇଁ ତାଙ୍କର ସୃଷ୍ଟି 'ମୀନାବଜାର'. 'ଝଙ୍କାର', ପ୍ରତିଭା, ପ୍ରଜାତନ୍ତ୍ରର ସାହିତ୍ୟ ପୃଷ୍ଠା ଏବଂ ବିଷୁବ ମିଳନ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିପାରିଛି । ତରୁଣ ଲେଖକ ଓ ଲେଖିକାମାନଙ୍କ ପାଇଁ

ଶିଶୁମାନଙ୍କର ମନଲାଖି ଗପ ଓ କବିତାପାଇଁ ମୀନାବଜାର ଅନ୍ୟ ଏକ ସ୍ୱତନ୍ତ୍ର ସୃଷ୍ଟି:

ସାମ୍ବାଦିକତା, ସମ୍ପାଦନା, ସାହିତ୍ୟ ସଂସ୍କୃତିର ଆସର ବିଷୁବ ମିଳନ ଏବଂ 'ଝଙ୍କାର'ର ଝଙ୍କାର ସବୁଦିନ ପାଇଁ ସୃଷ୍ଟି ହୋଇଥିବା ମାସିକ ପତ୍ରିକା 'ପ୍ରତିଭା'ର ପ୍ରତିଭା ଅନ୍ୱେଷଣ ସବୁଦିନ ପାଇଁ ଚାଲୁରହି ଅନେକ ପ୍ରତିଭାକୁ ପ୍ରତିଷ୍ଠିତ କରିବାରେ ସକ୍ଷମ ହେବ । ଏଭଳି ସୃଷ୍ଟି ଜଣେ ବହୁମୁଖୀ ପ୍ରତିଭାର ଅଧିକାରୀ ଛଡ଼ା ଅନ୍ୟ କିଛି ନହୋଇ ପାରେ ।

ଜାତୀୟ ସଂହତି ଓ ଅହିଂସାର ସେ ଥିଲେ ବଳିଷ୍ଠ ପୃଷ୍ଠପୋଷକ । ତାଙ୍କର ଜୀବନର ଲକ୍ଷ୍ୟକୁ ସେ ସାଧନାର ପଥେ (ପ୍ରଥମ ଖଣ୍ଡ)ରେ ଲେଖିଛନ୍ତି ଯେ 'ବ୍ରିଟିଶ୍ ସରକାର ଦେଶରୁ ଚାଲିଗଲେ ତାଙ୍କର କାର୍ଯ୍ୟ ଶେଷ ହୋଇଯିବ ନାହିଁ । ଯେତେଦିନ ପର୍ଯ୍ୟନ୍ତ ମନୁଷ୍ୟର ନ୍ୟାଯ୍ୟ ଅଧିକାର ଉପରେ କୌଣସି ବ୍ୟକ୍ତିବିଶେଷ ବା ଦଳ ହସ୍ତକ୍ଷେପ କରିବ, ସେତେଦିନ ପର୍ଯ୍ୟନ୍ତ ମୋର ଏହି ସଂଗ୍ରାମ ଚାଲୁରହିବ । ନିଜେ ବଞ୍ଚି ଅନ୍ୟକୁ ବଞ୍ଚିରହିବାର ସୁଯୋଗ ସୃଷ୍ଟି କରିବା ମୋର ଚରମ ଲକ୍ଷ୍ୟ । ଏହି ସଂଗ୍ରାମ ମୁଁ ମୋର ଜୀବନ ବିନିମୟରେ ମଧ ନିଶ୍ଚୟ ଚଳାଇବି ।'' ଏହିଭଳି ଲେଖା ଆଣିଦିଏ ଆମ୍ଭମାନଙ୍କ ମନରେ ଅନେକ ସାହସ । କିନ୍ତୁ ବାସ୍ତବରେ ଏହା ତାଙ୍କର ଲୌହମାନବର ପରିଚୟ ଛଡ଼ା ଅନ୍ୟ କିଛି ନହୋଇପାରେ । ସର୍ଦ୍ଦାର ବଲ୍ଲଭଭାଇ ପଟେଲଙ୍କ ବରଦୋଲି ଆନ୍ଦୋଳନ ନେତୃତ୍ୱଠାରୁ ଡକ୍ଟର ମହତାବଙ୍କର ଗଡ଼ଜାତ ନେତୃତ୍ୱ ମଧ କମ୍ ନୁହେଁ । ତାଙ୍କର ପ୍ରତ୍ୟେକ ପଦକ୍ଷେପ ଗୋଟିଏ ଗୋଟିଏ କାହାଣୀ ଛଡ଼ା ଅନ୍ୟକିଛି ନହୋଇ ପାରେ ।

ଆଜି ଓଡ଼ିଶା ମୁରବୀ ଶୂନ୍ୟ ହୋଇପଡ଼ିଛି । ଏଠାରେ ବଳିଷ୍ଠ ନେତୃତ୍ୱର ଅଭାବ ଦେଖାଦେଇଛି । ଭଲରେ କିମ୍ବା ମନ୍ଦରେ ଆଜି ଆମ ପାଖରେ କେହି ନାହାନ୍ତି ଯେ ଯାହାଙ୍କର କି ପରାମର୍ଶ ଆମକୁ ଦିଗ୍‌ଦର୍ଶନ ଦେଇପାରିବ । ତାଙ୍କର ଲେଖନୀର ମୁନ ଏତେ ସୁଦୃଢ଼ ଥିଲା ଯେ [illegible]ର ପରିସରକୁ କ୍ରମଶ ସୀମିତ କରିବା ପାଇଁ ସେ ସକ୍ଷମ ହୋଇ ପାରିଥିଲେ । ଅନ୍ୟାୟ, [illegible]କୁ ସେ ସହଜରେ ଗ୍ରହଣ କରିପାରୁ ନଥିଲେ । ସମସ୍ତଙ୍କ ପାଖରେ ସେ ଚିଠି ମାଧ୍ୟମରେ ପହଞ୍ଚି ପାରୁଥିଲେ । ସେ ଉତ୍ତର ଦେବାରେ କାହାରିକୁ ଛୋଟ କିମ୍ବା ବଡ଼ ଭାବି ପ୍ରଶ୍ନ [illegible] ନଥିଲେ । ଓଡ଼ିଶା ଇତିହାସ ବୁଦ୍ଧିଜୀବୀ ଓଡ଼ିଆ ପାଠକ ମହଲରେ ଆଦରଣୀୟ ହୋଇପାରିଛି । ଓଡ଼ିଶାର ରାଜଧାନୀ ଭୁବନେଶ୍ୱରଠାରେ କରିବା ପାଇଁ ତାଙ୍କର ବଳିଷ୍ଠ ଉଦ୍ୟମ ସବୁଦିନ ପାଇଁ ପ୍ରଶଂସନୀୟ । ହୀରାକୁଦ ନଦୀବନ୍ଧ ଯୋଜନାପାଇଁ ସେ ଆମ୍ଭମାନଙ୍କ ମାନସ ପଟରେ ସବୁଦିନ ପାଇଁ ସ୍ମରଣୀୟ ହୋଇ ରହିବ ।

❐ ❐

# ମହତାବ

ପଣ୍ଡିତ ପ୍ରବୋଧ କୁମାର ମିଶ୍ର

ଜ୍ୱଳନର ଶିଖା ତୁମେ ମହତାବ୍ ! ସ୍ପନ୍ଦନ ବୀଣା ତୁମେ ।
ଜ୍ୱାଳାମୁଖୀ ସେଇ ଲାଭା-ସଙ୍ଗୀତ ଗାଇଗଲ ଅବିରାମେ ।
ସେଇ ଗୀତେ ଥିଲା ହାଡ଼-ମାଉଁସର, ଶୋଣିତର ଉଚ୍ଛ୍ୱାସ ।
ତରଙ୍ଗହୀନ ଜୀବନ ଆଣିଲ ରଚି ନୂଆ ଇତିହାସ ।

(୨)

ଛାତି-ପଂଜରା ହାଡ଼ରେ ମାପିଲ ଜାତି-ତାତି-ନିଃଶ୍ୱାସ ।
ଅମାବାସ୍ୟାର ଚନ୍ଦ୍ର ସାଜିଲ ଦୁର୍ଦ୍ଦମ-ପୌରୁଷ ।
''ବୃହତ୍ତର ଏ ଉତ୍କଳ''- ତା'ର ତମେ ତ ସ୍ୱପ୍ନ-ଦ୍ରଷ୍ଟା ।
ସାଧକ; ବୋଧକ, ଶୋଧକ ତମେ ତ ଜାତିର କାବ୍ୟ-ସ୍ରଷ୍ଟା ।

(୩)

'ପ୍ରତିଭା'-ଧର ହେ ! ଅବ୍ୟାପାରର କରିଗଲ ସମାଧାନ ।
ଜାତି-ଜାତୀୟତା-ଶଙ୍ଖ ବାଇଲ (ରଚି) ମଣିଷର ଜୟଗାନ ।
ରତମୟ ସେଇ 'ଆନନ୍ଦ'ର ତ କରିଗଲ ସଂଧାନ ।
'ଦିନାନ୍ତେ ' ପୁଣି ସାଜିଲ ବାଟୋଇ, ଫେରିବାର ଅଭିଯାନ

(୪)

ଜାତି-ଜାତୀୟତା-ଦେଉଳେ ସାଜିଲ 'ବଡ଼ପଣ୍ଡା' ତ ଦିନେ ।
'ଉଠଦୋକାନୀ' ବି ଭାବିଲ ନିଜକୁ ଜୀବନର ଅବସାନେ ।
ଖିନ୍‌ଭିନ୍ ଭାବେ ଜୀବନ-ଗୀତିକା ଲେଖିଗଲ ଭାବ-ସ୍ୱରେ ।
ହେ ଜାତୀୟବୀର ! ଧର୍ମ-କର୍ମ-ଶର୍ମ-ସାଗର ତୀରେ ।

(୫)

ବାଣୀ ମନ୍ଦିର ରହିଛି, ରହିବ ତୁମରି କଲମ ଧାରା
ମଣିଷର ପାଇଁ ତିଆରଛ ଯେତେ ନୂତନ ସ୍ୱପ୍ନ-ତାରା ।
କେସରୀ ତୁମେ ଏ, ଉତ୍କଳ ଭୂମେ ତୁମେ ହିଁ ତୁମରି ତୁଲ୍ୟ
ଭାଷା-ସଂସ୍କୃତି-ଦୀପ ଲିଭେ ଏଠି, ଦିଏନିଁ କିଏ ତା' ମୂଲ୍ୟ

(୬)

ସଂସ୍କୃତିଧର ! କାବ୍ୟ ପୁରୁଷ ! ଜାତିକାଣ୍ଡାରି ! ଦେଖ,
ତ୍ରାସବାଦ, ଆଉ ଗୋଷ୍ଠୀବାଦର କେତେ ନୂଆ ଅଭିଷେକ ।
ସିକତାସିକ୍ତ-ସାଗରର ଧାରେ ମାଛରଙ୍କାର ଖେଳ
'ତ୍ୟାଗ ବିନା ଭୋଗ'-ରୋଗ ସଂଚରେ ଦେଶଟାରେ କୋଳାହଳ
ମହତାବ ! ତୁମେ ନିର୍ଜ୍ଜର ଆଉ ଭାସ୍ୱର ।
ନମସ୍କାର ହେ ! ଏ ମହା ଜାତିର ଭାସ୍ୱର ! ❒ ❒

# ସୁଆଶିଷ ଦିଅ ଢାଳି

**ଦେବରାଜ ସାମନ୍ତରାୟ**

ନିଭେମ୍ବର ଏକୋଇଶ
ଜାତିର୍ ଏକଇ ପୁଣ୍ୟ ଦିବସ
ହୋଇ ହରଷ
ସେହିହେତୁ ପାଳେ ଏ ଦେଶ ଜନତା
ଭକ୍ତିଭାବେ ହୋଇ ବଶ ।୧।
ଦେଇ କୁଆଁ କୁଆଁ ରବ
ଜନ୍ମିଥିଲ ଜକା ଶ୍ରୀ ମହତାବ
ସେବାର ଭାବ
ଭରି ତୁମ ହୃଦେ ସୃଷ୍ଟିକରତା କି
କରିଥିଲେ ଉଦ୍‌ଭବ ? ।୨।
ପାଠ ପଢ଼ି ହେଲ ବଡ଼
ଜିଣିବା ସକାଶେ ସ୍ୱାଧୀନ-ଗଡ଼
କହିଲ-ଲଢ଼
ଗୋରା ସର୍କାରକୁ ଦେଶରୁ ହଟାଇ
ବିଲାତକୁ ତାଙ୍କୁ ତଡ଼ ।୩।
ଜନତା ଉଠିଲା ତାତି
ସର୍କାର ବିରୋଧେ ସଭିଏଁ ମାତି
ଅହିଂସା-ନୀତି
ଏହାରି ବଳରେ ଆନ୍ଦୋଳନ କଲେ
ଗାଇ ଦେଶ ଜୟ-ଗୀତି ।୪।
ମାନିଲନି ଉଆରଣ୍ଟ
ଲୋକଙ୍କୁ କରିଲ ମେଣ୍ଟ
ଦେଖାଇ ଆଣ୍ଟ
ହୁଗାଳିଲ ତୁମେ ଫିରିଙ୍ଗୀ ଶାସକ
ଶାସନ-କୁରାଢ଼ି ବେଣ୍ଟ ।୫।

ଲଢ଼ିଥିଲ ବୋଲି ତୁମେ
ଗଣତନ୍ତ୍ର ସୁଖ ପାଇଲୁ ଆମେ
ଏହି ସଂଗ୍ରାମେ
ସତ୍ୟର ମହିମା ଦେଇଥିଲା ଦେଖା
ଆମ ଏ ଭାରତ ଭୂମେ ।୬।
ଖାଇଥିଲ ତୁମେ ଲାଠି
ଲାଠି ପାହାରରେ ଫାଟିଲା ପିଠି
ନଥିଲ ହଟି
ଜେଲଖାନା ଘରେ ବରଷ ବରଷ
ଦିନ ଗଲା ବେଠି ଖଟି ।୭।
ଉଦ୍ଧାର ପାଇଲା ଦେଶ
କୋଟି ଜନ ମୁଖେ ଫୁଟିଲା ହସ
ଆମ ପ୍ରଦେଶ
ତୁମରି ସକାଶେ ପରିଧାନ କଲା
ଏକତ୍ରୀକରଣ ବେଶ ।୮।
କହୁଛି ଭୁବନେଶ୍ୱର
ହୀରାକୁଦୁଁ ଝରେ ବିଜୁଳି ଝର
ହେ କର୍ମବୀର
ତୁମରି ଯୋଗୁଁ ହିଁ ଏଡ଼େ ବଡ଼ ରୂପ
ହେଲା ଆମ ଓଡ଼ିଶାର ।୯।
ଜନ ହୃଦେ ବରାବର
ବୁହାଇବା ଲାଗି ଶିକ୍ଷାର ଧାର
'ମୀନାବଜାର'
'ପ୍ରଜାତନ୍ତ୍ର' ତୁମ 'ଝଙ୍କାର' 'ପ୍ରତିଭା'
ଖେଳ ଖେଳେ ନିରନ୍ତର ।୧୦।

ଓଡ଼ିଶାର ଇତିହାସ
ରଚନା ତୁମର କେଡ଼େ ସରସ
କରି ପ୍ରକାଶ
ଓଡ଼ିଆ ଏ ଜାତି ହାତରେ ଦେଇଛ
ପିଇବାକୁ ଜ୍ଞାନରସ ।୧୧।
ଓଡ଼ିଶା ପ୍ରଧାନମନ୍ତ୍ରୀ
ରାଜ୍ୟପାଳ ପୁଣି କେନ୍ଦ୍ରରେ ମନ୍ତ୍ରୀ
ଥିଲ ଯେମନ୍ତି
ଆଜି ପରିଯନ୍ତ ପଦବୀ ସେମନ୍ତି
କେହି ତ ପାଇନାହାନ୍ତି ।୧୨।
ଅହରହ କାର୍ଯ୍ୟ କରି
ବଢ଼ାଇଲ ଦେଶ ଦଶର ଶିରୀ
ହେବାକୁ ସରି
ଆମ ଏ ରାଇଜେ [illegible] କେହି
ନାହାନ୍ତି ତୁମରି ପରି ।୧୩।
ଦେଶ ହିତେ ରଖି ଲକ୍ଷ୍ୟ
ଦେଖାଇଲ କେତେ ନୂଆ ଉପାୟ
ହୋଇ ନିର୍ଭୟ
ସୁକୃତି ବଳରେ ଗଣ ହୃଦୟକୁ
କରିପାରିଥିଲା ଜୟ ।୧୪।
ବଡା ପ୍ରିୟ ସଚ୍ଚା ନେତା
ରହିଥିବ ହୋଇ ଜଗତଜିତା
ସଚେତନତା
ଜନ ମନେ ପୁଣି ଭରିଅଛ ଯେଣୁ
ଭାବନାର ମହାନତା ।୧୫।
ଦେଶ ପ୍ରେମେ ରଖି ମତି
ଲାଗିରହିଥିଲ ଦିବସ ରାତି
ତୁମ ଏ ଗତି
ମୁକତି-ପଥକୁ ଓଟାରି ଆଣିଲା
ଉପକୃତ ହେଲା ଜାତି ।୧୬।
ଦେଖାଇ ନୂତନ ରାହା
ହୋଇଅଛ ତୁମେ ଲୋକଙ୍କୁ ସାହା
କରିଛ ଯାହା
ଚନ୍ଦର ସୂରୁଜ ରହିଥିବା ଯାଏ
ଝଳି ଉଠୁଥିବ ତାହା ।୧୭।
ସରବେ ହୁଅନ୍ତୁ ସୁଖୀ
କେହିହେଲେ ଜଣେ ନରହୁ ଦୁଃଖୀ
ସଂକଳ୍ପ ରଖି
ଦେଖାଇଛ ଯେତେ ମହତ କରଣି
ଇତିହାସ ତା'ର ସାକ୍ଷୀ ।୧୮।
ସେହି ପଥ ଅନୁସରି
ଆଦରଣ ତୁମ ନୀତିକୁ ଧରି
ସୁକର୍ମ କରି
ଆଗକୁ ଆଗକୁ ଆଗେଇ ଚାଲିବୁ
ଯିବୁନାହିଁ କେଭେଁ ହାରି ।୧୯।
ଉତ୍କଳକେଶରୀ ତୁମେ
ତୁମ ଗୁଣ ଗୁଣି ହେଉଛୁ ଆମେ
ତୁମରି ନାମେ
ଆମ ଏ ଉତ୍କଳ ଚାଲିଛି ଚାଲିବ
ଯଶ ରଖି ଧରାଧାମେ ।୨୦।
ଆଜେ ସନ୍ତୁ ତୁମଭଳି
କାମ [illegible]ଡିଯିବୁ ଭିଳିକିଭଳି
ଏତିକି ଅଳି
ଜନମଭୂଇଁର ବଢ଼ାଇବୁ ଟେକ
ସୁଆଶିଷ ଦିଅ ଢାଳି ।୨୧।

*ଆଇ.ଭି. ୪୨/୨*
*ୟୁନିଟ-୧, ଭୁବନେଶ୍ୱର*



ସଂଗ୍ରହ କରନ୍ତୁ     ସଂଗ୍ରହ କରନ୍ତୁ

**ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଆ ସାହିତ୍ୟର ନବନିର୍ମାଣ ପର୍ବର ବିଦ୍ଧାଣୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ୬ଟି ଉପନ୍ୟାସ (ନୂତନଧର୍ମ, ପ୍ରତିଭା, ଟାଉଟର, ଅବ୍ୟାପାର, ତୃତୀୟପର୍ବ ଓ ୧୯୬୫)କୁ ନେଇ ଆତ୍ମପ୍ରକାଶ କଲା**




# ମହତାବ ଗ୍ରନ୍ଥାବଳୀ

## ପ୍ରଥମ ଖଣ୍ଡ

ପ୍ରକାଶକ :

**ଡକ୍ଟର ହରେକୃଷ୍ଣ ମହତାବ ଫାଉଣ୍ଡେସନ**

ବିହାରୀବାଗ, କଟକ-୨

ମୂଲ୍ୟ : ୨୫୦ ଟଙ୍କା

ପ୍ରାପ୍ତିସ୍ଥାନ

**ପ୍ରଜାତନ୍ତ୍ର ପୁସ୍ତକ ଭଣ୍ଡାର**

ପ୍ରଜାତନ୍ତ୍ର ପରିସର, ବିହାରୀବାଗ, କଟକ-୨